# ସପ୍ତଶାଖା

( ଜୀବନ : ପ୍ରତିଭା )

ପ୍ରକାଶକ :

ଉତ୍କଳ ପାଠକ ସଂସଦ

କଟକ

ପରିବେଷକ :



ଓଡ଼ିଶା ବୁକ୍ ଷ୍ଟୋର

ବିନୋଦବିହାରୀ, କଟକ-୨

---


ମୂଲ୍ୟ : **ପନ୍ଦର ଟଙ୍କା ମାତ୍ର**

ପ୍ରକାଶକାଳ : ୧୯ ମାର୍ଚ୍ଚ, ୧୯୮୯

ପ୍ରାପ୍ତିସ୍ଥାନ : **ଓଡ଼ିଶା ବୁକ୍ ଷ୍ଟୋର**
ବିନୋଦବିହାରୀ, କଟକ-୭୫୩ ୦୦୨

ମୁଦ୍ରଣ : **ରେଖା ପ୍ରେସ**
ବାଙ୍କିସାହି, କଟକ-୭୫୩ ୦୦୯

ଉତ୍କଳ ପାଠକ ସଂସଦର—

ସଭାପତି : ଡକ୍ଟର ସଦାଶିବ ମିଶ୍ର
ସମ୍ପାଦକ : ଡକ୍ଟର ବ୍ରଜମୋହନ ମହାନ୍ତି
ସହ-ସମ୍ପାଦକ : ଶ୍ରୀ ସୁଭାଷଚନ୍ଦ୍ର ମହାନ୍ତି

# ଉତ୍କଳ ପାଠକ ସଂସଦର କର୍ମକର୍ତ୍ତାଗଣ :

ସଭାପତି : ଡକ୍ଟର ସଦାଶିବ ମିଶ୍ର
ସମ୍ପାଦକ : ଡକ୍ଟର ବ୍ରଜମୋହନ ମହାନ୍ତି
ସହ-ସମ୍ପାଦକ : ଶ୍ରୀ ସୁଭାଷଚନ୍ଦ୍ର ମହାନ୍ତି

# ପରିଚାଳନା ଓ ସମ୍ପାଦକ ମଣ୍ଡଳୀ :

ଶ୍ରୀ ପଠାଣି ପଟ୍ଟନାୟକ
ଡକ୍ଟର ବଶିଷ୍ଠାନନ୍ଦ ମହାନ୍ତି
ଡକ୍ଟର ବାସୁଦେବ ସାହୁ
ଶ୍ରୀ ପରମେଶ୍ୱର ତ୍ରିପାଠୀ
ଶ୍ରୀ ଶୁଭନାରାୟଣ ସ୍ୱାଇଁ
ଶ୍ରୀ ଗୋକୁଳାନନ୍ଦ ଦାସ
ଶ୍ରୀ ବସନ୍ତ କୁମାର ମହାନ୍ତି
ଶ୍ରୀ ରହାସ ରାୟ
ଶ୍ରୀ ବରଦାପ୍ରସନ୍ନ ପଟ୍ଟନାୟକ
ଡକ୍ଟର ବୈଷ୍ଣବଚରଣ ସାମଲ
ଡକ୍ଟର ରତ୍ନାକର ଚଇନି
ଶ୍ରୀମତୀ ବୀଣାପାଣି ମହାନ୍ତି
ଡାକ୍ତର ଶୈଳେଶ୍ୱର ନନ୍ଦ
ଶ୍ରୀ ଗୋବିନ୍ଦଚରଣ ପାତ୍ର
ଶ୍ରୀ ରାଧାଶ୍ୟାମ ମହାନ୍ତି
ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ପଟ୍ଟନାୟକ
ଶ୍ରୀମତୀ ସୁଜାତା ମହାନ୍ତି
କୁମାରୀ କାକଳି ପାଲ୍
ଶ୍ରୀ ଚନ୍ଦ୍ରଶେଖର ପ୍ରଧାନ
ଶ୍ରୀ ଅର୍ଜୁନ ଦାଶ
ଶ୍ରୀ ନବୀନ ପଟ୍ଟନାୟକ
ଶ୍ରୀ ତପନ ମିତ୍ର
ଶ୍ରୀ ପ୍ରସନ୍ନ କୁମାର ଦାଶ

# ଆମର ଅଭିମୁଖ୍ୟ

୧୯୭୦ ମସିହାରେ ଜାତିସଂଘ ପକ୍ଷରୁ ଆୟୋଜିତ ଆନ୍ତର୍ଜାତୀୟ ପୁସ୍ତକ ବର୍ଷ (National Book Year) ଅବସରରେ ଜନ୍ମଲାଭ କରିଥିଲା ଉତ୍କଳ ପାଠକ ସଂସଦ । ଏହି ବର୍ଷଠାରୁ ପୁସ୍ତକ ପ୍ରସାର ଉଦ୍ଦେଶ୍ୟରେ ଆଲୋଚନାଚକ୍ର, ପୁସ୍ତକ ପ୍ରଦର୍ଶନୀ, ବୈଷୟିକ ପ୍ରଦର୍ଶନୀ, ବୈଷୟିକ ଆଲୋଚନା, କବି ସମ୍ମେଳନ, ହାସ୍ୟରସାତ୍ମକ କାର୍ଯ୍ୟକ୍ରମ, ଛାତ୍ରଛାତ୍ରୀଙ୍କ ମଧ୍ୟରେ ବିଭିନ୍ନ ପ୍ରତିଯୋଗିତା, ଲୋକଗୀତ, ଲୋକବାଦ୍ୟ, ଓଡ଼ିଶୀ ସଙ୍ଗୀତ, ଓଡ଼ିଶୀ ନୃତ୍ୟର ପ୍ରସାର, ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନ ପ୍ରଦର୍ଶନ, ସେମାନଙ୍କ ଜୀବନୀ ଉପରେ ଆଧାରିତ ପୁସ୍ତକ ପ୍ରକାଶନ ଏବଂ ଭାଷା, ସଂସ୍କୃତି ଓ ସମାଜର କଲ୍ୟାଣ ଉଦ୍ଦେଶ୍ୟରେ ବିଭିନ୍ନ ବିଷୟବସ୍ତୁ ଉପରେ ବିଶେଷ ସଂକଳନ ପ୍ରକାଶ କରାଯାଉଅଛି । ଏତଦ୍‌ବ୍ୟତୀତ ଗ୍ରାମାଞ୍ଚଳରେ ଉଦ୍‌ଘାଟନ ଉତ୍ସବର ଆୟୋଜନ କରି ନୂତନ ସାହିତ୍ୟିକ ସୃଷ୍ଟି ଓ ବୈଷୟିକ ଆଲୋଚନା ଦ୍ୱାରା ଲୋକମାନଙ୍କର ବୌଦ୍ଧିକ ବିକାଶ ଦିଗରେ ସାହାଯ୍ୟ କରିବାପାଇଁ ମଧ୍ୟ ସଂସଦ ପଦକ୍ଷେପ ନେବାକୁ ଯତ୍ନ କରୁଛି ।

ଉତ୍କଳ ପାଠକ ସଂସଦ ବିଶ୍ୱାସ କରେ ଯେ—ଏ ଜାତିର ଶତ ଶତ ପ୍ରତିଭାଧର ବ୍ୟକ୍ତି ସ୍ୱ ସ୍ୱ କ୍ଷେତ୍ରରେ ସୁପ୍ରତିଷ୍ଠିତ । କଳା, ବିଜ୍ଞାନ, ସାହିତ୍ୟ, ସଂସ୍କୃତି, ସ୍ଥାପତ୍ୟ, ଶିଳ୍ପ, ଭାସ୍କର୍ଯ୍ୟ ଇତ୍ୟାଦି ବିଭିନ୍ନ କ୍ଷେତ୍ରରେ ସେମାନଙ୍କର ସ୍ୱାକ୍ଷର ସୁସ୍ପଷ୍ଟ । ସେମାନଙ୍କ ମଧ୍ୟରୁ କେତେକ ହୁଏତ ସମାଜରେ ସ୍ୱୀକୃତ,

ସମ୍ମାନିତ, ମାତ୍ର ବିଭିନ୍ନ କାରଣରୁ ଆହୁରି ଅନେକ ଉପଯୁକ୍ତ ସମ୍ମାନ ଲାଭରୁ ମଧ୍ୟ ବଞ୍ଚିତ ।

କିନ୍ତୁ ମନେ ରଖିବାକୁ ହେବ ଯେ—ପ୍ରତିଭା ପୂଜା ଗୋଟିଏ ଜାତିର ସାଂସ୍କୃତିକ ଜୀବନକୁ ବଳିଷ୍ଠ ତଥା ଋଦ୍ଧିମନ୍ତ କରିଥାଏ । ଓଡ଼ିଶାରେ ଅନେକ କୃତୀ ସନ୍ତାନ ଜନ୍ମଗ୍ରହଣ କରି ବିଭିନ୍ନ କ୍ଷେତ୍ରରେ ଆନ୍ତର୍ଜାତିକ ସମ୍ମାନର ଅଧିକାରୀ ହୋଇ ପାରିଥିଲେ ସୁଦ୍ଧା, ସେମାନଙ୍କର ଜୀବନୀ ଏବଂ କୃତି ଯଥାଯଥ ଭାବରେ ସଂଗୃହିତ ହୋଇ ପାରିନାହିଁ ।

ତେଣୁ ଉତ୍କଳ ପାଠକ ସଂସଦ ପୂଜ୍ୟପୂଜାର ପରମ୍ପରା ରକ୍ଷା ପାଇଁ ଜୀବିତ ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନ ଦେବାର କିଞ୍ଚିତ ପ୍ରୟାସ କରିଛି ମାତ୍ର । ଏହି କାର୍ଯ୍ୟକ୍ରମ ଅନୁଯାୟୀ ସର୍ବଶ୍ରୀ କାହ୍ନୁଚରଣ ମହାନ୍ତି, ରାଧା-ମୋହନ ଗଡ଼ନାୟକ, ରାଜକିଶୋର ପଟ୍ଟନାୟକ, ତାରଣୀଚରଣ ପାତ୍ର, କେଳୁଚରଣ ମହାପାତ୍ର, ଭଗବାନ ପତି, ଡକ୍ଟର କୁଞ୍ଜବିହାରୀ ଦାଶ, ଶ୍ରୀମତୀ ସରଳା ଦେବୀ, ଶ୍ରୀ ଶ୍ରୀଧର ମହାପାତ୍ର, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଡକ୍ଟର ମିନତୀ ମିଶ୍ର, ଶ୍ରୀ ସାମୁଏଲ ସାହୁ (ବାବା) ଓ ଅନ୍ୟ କେତେ ଜଣ ବିଭିନ୍ନ କ୍ଷେତ୍ରରେ ସ୍ମରଣୀୟ ବ୍ୟକ୍ତିମାନଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇ-ଥିଲା । ପ୍ରଥମ ପାଞ୍ଚବର୍ଷରେ କେବଳ ମାନପତ୍ର ଦେଇ ଏହି ପ୍ରତିଭାଧରମାନଙ୍କୁ ସମ୍ମାନିତ କରିବାରେ ଏ ସଂସଦ ସନ୍ତୁଷ୍ଟ ହୋଇପାରିଲା ନାହିଁ । ସେଥିପାଇଁ ପରେ ପ୍ରତ୍ୟେକ ବର୍ଷ-ପର୍ଯ୍ୟାୟକ୍ରମେ ମହାନ୍ ବ୍ୟକ୍ତିମାନଙ୍କ ମଧ୍ୟରୁ ସାତ ଜଣଙ୍କୁ ସମ୍ମାନିତ କରି ସେମାନଙ୍କର ଜୀବନ ଚରିତ ଓ କାର୍ଯ୍ୟକଳାପକୁ ପୁସ୍ତକ ଆକାରରେ ପ୍ରକାଶ କରି ଆସୁଅଛି ।

ଏହି ସଂସଦ ତରଫରୁ ଏପର୍ଯ୍ୟନ୍ତ ବାରଗୋଟି ଜୀବନୀ ସଙ୍କଳନ ପ୍ରକାଶ ପାଇଲାଣି ଯଥା:—(୧) ପ୍ରତିଭା ପରିଚୟ (୧୯୭୬), (୨) ସପ୍ତ-ରଶ୍ମି (୧୯୭୭), (୩) ସପ୍ତଶିଖା (୧୯୭୮), (୪) ସପ୍ତପ୍ରଦୀପ (୧୯୭୯), (୫) ସପ୍ତଶ୍ରୀ (୧୯୮୦), (୬) ସପ୍ତଜ୍ୟୋତି (୧୯୮୧), (୭) ସପ୍ତପୁଷ୍ପ (୧୯୮୨), (୮) ସପ୍ତରାଗ (୧୯୮୩), (୯) ସପ୍ତସୁମନ (୧୯୮୪), (୧୦) ସପ୍ତସ୍ତବକ (୧୯୮୫), (୧୧) ସପ୍ତତରଙ୍ଗ (୧୯୮୬), ସପ୍ତପ୍ରଭା (୧୯୮୭) ସପ୍ତଧାରା (୧୯୮୮) ଓ ସଦ୍ୟ ପ୍ରକାଶିତ ପୁସ୍ତକ ସପ୍ତଶାଖା ।

୧୯୭୬ରେ 'ପ୍ରତିଭା ପରିଚୟ' ପୁସ୍ତକରେ ସାହିତ୍ୟ ସାଧକ କାଳିନ୍ଦୀ ଚରଣ ପାଣିଗ୍ରାହୀ, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ସାହିତ୍ୟିକ ଓ ସାମ୍ବାଦିକ ଉଦୟନାଥ ଷଡ଼ଙ୍ଗୀ, ନାଟ୍ୟକାର କାର୍ତ୍ତିକ କୁମାର ଘୋଷ, ମାଷ୍ଟର ରାମଚନ୍ଦ୍ର ମାଣିଆ, ସ୍ୱରସାଧକ ନିମାଇଁ ଚରଣ ହରିଚନ୍ଦନ, ପୁସ୍ତକ ପ୍ରକାଶକ ଅନନ୍ତ ମିଶ୍ରଙ୍କ ଜୀବନୀ ଓ କୃତି ଆଲୋଚିତ ।

୧୯୭୭ରେ ସଂକଳିତ 'ସପ୍ତରଶ୍ମି' ପୁସ୍ତକରେ ଓଡ଼ିଶାର ପ୍ରଖ୍ୟାତ ସାମ୍ବାଦିକ ଡକ୍ଟର ରାଧାନାଥ ରଥ, ଔପନ୍ୟାସିକ ଗୋପୀନାଥ ମହାନ୍ତି, ଚିତ୍ରଶିଳ୍ପୀ ବିପିନବିହାରୀ ଚୌଧୁରୀ, ଅନୁବାଦକ ଲଲ୍ ନଗେନ୍ଦ୍ର କୁମାର ରାୟ, ସଙ୍ଗୀତ ସାଧକ ବାଳକୃଷ୍ଣ ଦାସ, ନାଟ୍ୟଭୂଷଣ ସତ୍ୟନାରାୟଣ ରାଜଗୁରୁ ଏବଂ ପୁସ୍ତକ ପ୍ରକାଶକ ଗୋକୁଳ ଚନ୍ଦ୍ର କରଙ୍କର ଜୀବନୀ ଓ କୃତି ପ୍ରକାଶିତ ।

୧୯୭୮ରେ ପ୍ରକାଶିତ 'ସପ୍ତଶିଖା' ପୁସ୍ତକରେ ଅଭିନେତା ଯଜ୍ଞାନ୍ ଦାସ, ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ବିପ୍ଳବୀ ରାଜକୃଷ୍ଣ ବୋଷ, ଚିତ୍ରଶିଳ୍ପୀ ମୁରଲୀଧର ଟାଲି, ସାମ୍ବାଦିକ ଶ୍ରୀହର୍ଷ ମିଶ୍ର, କଥା ସାହିତ୍ୟ ସାଧକ ସୁରେନ୍ଦ୍ର ମହାନ୍ତି, ସଙ୍ଗୀତଜ୍ଞ ଶ୍ୟାମସୁନ୍ଦର ଧୀର ଏବଂ ରୁଚିବନ୍ତ ପ୍ରକାଶକ ଗୋବିନ୍ଦ ଚରଣ ପାତ୍ରଙ୍କ ସାଧନାପୂର୍ଣ୍ଣ ଜୀବନୀ ସନ୍ନିବିଷ୍ଟ ।

୧୯୭୯ର 'ସପ୍ତପ୍ରଦୀପ' ପୁସ୍ତକରେ ଛଉନୃତ୍ୟ ଗୁରୁ ଚନ୍ଦ୍ରଶେଖର ଭଞ୍ଜ, ଚିତ୍ରଶିଳ୍ପୀ ହରିଶରଣ ମହାପାତ୍ର, ସଙ୍ଗୀତସାଧକ ଜଗବନ୍ଧୁ ସାହୁ, ବଙ୍କିମାଞ୍ଚଳର କବି ଜଗନ୍ନାଥ ଦେବବର୍ମା, ଜନସେବୀ ନିତ୍ୟାନନ୍ଦ କାନୁନ୍‌ଗୋ, ଶିକ୍ଷାବିତ୍ ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ସାରସ୍ୱତ ସାଧକ ଶ୍ରଦ୍ଧାକର ସୂପକାରଙ୍କ କୃତି ବର୍ଣ୍ଣିତ ।

୧୯୮୦ 'ସପ୍ତଶ୍ରୀ' ପୁସ୍ତକରେ ସାହିତ୍ୟସେବୀ ଡକ୍ଟର ହରେକୃଷ୍ଣ ମହତାବ, ଐତିହାସିକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ନାଟ୍ୟକାର ଶ୍ରୀ ରାମଚନ୍ଦ୍ର ମିଶ୍ର, ସାହିତ୍ୟିକ ଶ୍ରୀ ରାମପ୍ରସାଦ ସିଂହ, ବେଦାନ୍ତାଳଙ୍କାର ପଣ୍ଡିତ ଗତେଶ୍ୱର ରଥ, ଗାୟକରତ୍ନ ବୈଦ୍ୟନାଥ ଶର୍ମା, ପାଲାଗାୟକ ଶ୍ରୀ ପରମାନନ୍ଦ ଶରଣଙ୍କ ଜୀବନୀ ଉପରେ ଆଲୋକପାତ କରାଯାଇଛି ।

୧୯୮୧ର 'ସପ୍ତଜ୍ୟୋତି' ସଂକଳନର ନାଟ୍ୟକାର ଗୋପାଳ ଛୋଟରାୟ, ସମାଜସେବୀ ନନ୍ଦକିଶୋର ଦାସ, ଇତିହାସବେତ୍ତା ଡକ୍ଟର

ନବୀନ କୁମାର ସାହୁ, ଗବେଷକ ସୁଧାକର ପଟ୍ଟନାୟକ, ପ୍ରତ୍ନତତ୍ତ୍ୱବିତ୍ କେଦାରନାଥ ମହାପାତ୍ର, ଶିଳ୍ପୀଗୁରୁ ଜଗନ୍ନାଥ ମହାପାତ୍ର ଓ ନୃତ୍ୟଗୁରୁ ଭଗବାନ ସାହୁଙ୍କ ଜୀବନୀ ଓ କୃତି ସ୍ଥାନ ପାଇଛି ।

୧୯୮୨ର 'ସପ୍ତପୁଷ୍ପ' ସଂକଳନ ରସିକରାଜ ଫକୀରାନନ୍ଦ, ପାଲାଗାୟକ ନିରଞ୍ଜନ କର, ମଞ୍ଚଗୁରୁ ଦୁର୍ଲ୍ଲଭଚନ୍ଦ୍ର ସିଂହ, ଶିଳ୍ପୀ ଶିରୋମଣି ଶ୍ରୀଧର ମହାପାତ୍ର, ବାଣୀବରପୁତ୍ର ରାମକୃଷ୍ଣ ନନ୍ଦ, ଚଳନ୍ତି ଚରକ କବିରାଜ ଅନନ୍ତ ତ୍ରିପାଠୀ ଶର୍ମା ଓ ସାମାଜସେବକ ପଦ୍ମଶ୍ରୀ ମୋହନ ନାୟକଙ୍କ ଜୀବନୀ ଓ ସାଧନା ଉପରେ ଆଧାରିତ ।

୧୯୮୩ର 'ସପ୍ତରାଗ' ସଂକଳନରେ ଭାଷାବିଜ୍ଞାନୀ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ, ଜନସେବୀ ଲମ୍ବୋଦର ପାଣିଗ୍ରାହୀ, କବି ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ, ଉତ୍କଳବନ୍ଧୁ ପି. ଭି. କୃଷ୍ଣମୂର୍ତ୍ତି, ସୃଜନଶୀଳ ନାଟ୍ୟକାର ମନୋରଞ୍ଜନ ଦାସ, ସ୍ଥାପତ୍ୟଶିଳ୍ପୀ ଭୁବନେଶ୍ୱର ମହାପାତ୍ର ଓ ଛଉନୃତ୍ୟ ଗୁରୁ ଅନନ୍ତ ଚରଣ ସାୟୀଙ୍କ ଜୀବନୀ ଓ କୃତି ଉପରେ ଆଲୋକପାତ କରାଯାଇଛି ।

୧୯୮୪ର 'ସପ୍ତସୁମନ' ସଂକଳନରେ ସାହିତ୍ୟ ସୁଧାକର ଡ଼କ୍ଟର ଭୁବନେଶ୍ୱର ବେହେରା, ନାଟ୍ୟକାର ଭଞ୍ଜକିଶୋର ପଟ୍ଟନାୟକ, ଜନସେବକ ଡାକ୍ତର ଶରତଚନ୍ଦ୍ର ମିଶ୍ର, ମଞ୍ଚଶ୍ରୀ ସତ୍ୟନାରାୟଣ ପଣ୍ଡା, ସଙ୍ଗୀତ ଗୁରୁ ଶ୍ରୀକ୍ଷିତୀଶ ଚନ୍ଦ୍ର ମୈତ୍ର, ଗବେଷକ ଡ଼ଃ ନଟବର ସାମନ୍ତରାୟ, ଛଉନୃତ୍ୟ ଗୁରୁ ପଦ୍ମଶ୍ରୀ କେଦାରନାଥ ସାହୁଙ୍କ ଜୀବନୀ ଓ କୃତି ସ୍ଥାନ ପାଇଛି ।

୧୯୮୫ ମସିହାରେ 'ସପ୍ତ ସ୍ତବକ' ଜୀବନୀ ପୁସ୍ତକରେ ସଙ୍ଗଠକ ବାବୁଲାଲ ଦୋଶୀ, କଳାକାର ବାଞ୍ଛାନିଧି ଶତପଥୀ, ସାହିତ୍ୟିକ ଅନନ୍ତ ପ୍ରସାଦ ପଣ୍ଡା, ଗବେଷକ ବିନୋଦ କାନୁନ୍‌ଗୋ, ସଙ୍ଗୀତ ସାଧକ ଭୁବନେଶ୍ୱର ମିଶ୍ର, ଚିତ୍ରଶିଳ୍ପୀ ଲକ୍ଷ୍ମୀନାରାୟଣ ଆଗୁଆ ଓ ହାସ୍ୟସ୍ରଷ୍ଟା ବସନ୍ତ କୁମାର ଶତପଥୀଙ୍କ ଜୀବନୀ ପ୍ରଦତ୍ତ ।

ସେହିପରି ୧୯୮୬ ମସିହାରେ 'ସପ୍ତତରଙ୍ଗ' ଜୀବନୀ ପୁସ୍ତକ ପ୍ରକାଶ ଲାଭ କରିଥିଲା । ଏହି ପୁସ୍ତକରେ ସ୍ଥାନ ଲାଭ କରିଥିଲେ ଐତିହାସିକ ଡ଼କ୍ଟର ମନ୍ମଥନାଥ ଦାସ, ନାଟ୍ୟକାର ରଘୁନାଥ ପଣ୍ଡା, ସଙ୍ଗୀତ ଶିଳ୍ପୀ

ମାର୍କଣ୍ଡେୟ ମହାପାତ୍ର, ସମାଜସେବୀ ଶ୍ୟାମସୁନ୍ଦର ମିଶ୍ର, ନୃତ୍ୟଗୁରୁ ପଙ୍କଜ ଚରଣ ଦାସ, କବି ଅନନ୍ତ ପଟ୍ଟନାୟକ ଓ ସଂଗଠକ ଦାଶରଥି ପଟ୍ଟନାୟକଙ୍କ ଜୀବନୀ ।

୧୯୮୭ ମସିହାରେ ପ୍ରକାଶ ଲାଭ କରିଥିଲା 'ସପ୍ତପ୍ରଭା' । ଏହି ସଂକଳନରେ ସାହିତ୍ୟିକ ଅନୁପ ସିଂହଦେଓ, ଗବେଷକ ଡଃ ବଂଶୀଧର ମହାନ୍ତି, ବୈଜ୍ଞାନିକ ଡ଼ଃ ଗୋକୁଳାନନ୍ଦ ମହାପାତ୍ର, ନୃତ୍ୟଶିଳ୍ପୀ ଡ଼ଃ ପ୍ରିୟମ୍ବଦା ମହାନ୍ତି ହେଜମାଡି, ସଙ୍ଗୀତଶିଳ୍ପୀ କାଶୀନାଥ ପୂଜାପଣ୍ଡା, ଚିତ୍ରଶିଳ୍ପୀ ଅଜିତ୍ ମୁଖାର୍ଜୀ ଏବଂ ପ୍ରକାଶକ ଶୁକଦେବ ସାହୁଙ୍କ ଜୀବନୀ ସ୍ଥାନ ପାଇଥିଲା ।

ଏତଦ୍‌ବ୍ୟତୀତ ୧୯୮୮ ମସିହାରେ 'ସପ୍ତଧାରା' ଜୀବନୀ ପୁସ୍ତକ ପ୍ରକାଶ ଲାଭ କରିଥିଲା । ଏହି ପୁସ୍ତକରେ ସ୍ଥାନ ପାଇଥିଲା ସଂସ୍କୃତ ପ୍ରବୀଣ ପଣ୍ଡିତ ଚିନ୍ତାମଣି ମିଶ୍ର, କବି କୃଷ୍ଣଚନ୍ଦ୍ର ତ୍ରିପାଠୀ, ଅଭିନେତ୍ରୀ ଶ୍ରୀମତୀ ମଣିମାଳା ଦେବୀ, ଗବେଷକ ଶ୍ରୀ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା, ନୃତ୍ୟ ଶିଳ୍ପୀ ଶ୍ରୀମତୀ ସଂଯୁକ୍ତା ପାଣିଗ୍ରାହୀ, ସମାଜସେବିକା ଶ୍ରୀମତୀ ରମ୍ଭା ଦେବୀ ଓ ସୁଲଳିତ ସଙ୍ଗୀତ ଗାୟିକା ଶ୍ରୀମତୀ ବୀଣାପାଣି ମିଶ୍ରଙ୍କ ଜୀବନୀ ।

ଆମେ ଆଶାକରୁ ଆମର ଏ ଉଦ୍ୟମ ଓଡ଼ିଶାର ପାଠକ ପାଠିକାଙ୍କ ନିକଟରେ ପ୍ରତିଭାବାନ୍ ବ୍ୟକ୍ତିମାନଙ୍କୁ ପରିଚିତ କରାଇବାରେ ସହାୟକ ହେବ । ସେମାନଙ୍କୁ ଯେଉଁ ମାନପତ୍ର ପ୍ରଦାନ କରାଯାଉଛି ତାହା କିଞ୍ଚିତ୍ ପରିମାଣରେ ଆନନ୍ଦ ପ୍ରଦାନ କରିବ ଓ ନିରାମୟ ଜୀବନଯାପନ ପାଇଁ ପ୍ରେରଣା ଯୋଗାଇବ ।

ଅବଶ୍ୟ ଆମର ଏ ଉଦ୍ୟମ ଯଥେଷ୍ଟ ନୁହେଁ । ଏ ଦିଗରେ ଆହୁରି ଅନେକ କିଛି କରିବାକୁ ବାକି ଅଛି । ତାହା ସତ୍ତ୍ୱେ ବିଶ୍ୱାସ କରାଯାଏ ଯେ ପ୍ରାଥମିକ ପଦକ୍ଷେପ ସ୍ୱରୂପ ଏହି ଜୀବନୀ ସଂକଳନଗୁଡ଼ିକ ଭବିଷ୍ୟତ ପାଇଁ ଆଲୋକବର୍ତ୍ତିକା ସଦୃଶ କାର୍ଯ୍ୟ କରିବ ।

ସ୍କୁଲ୍, କଲେଜର କର୍ମକର୍ତ୍ତା ଓ ପାଠକପାଠିକାଗଣ ଏହି ସଂକଳନ କ୍ରୟ କରି ପାଠକଲେ ଆମର ଶ୍ରମ ସାର୍ଥକ ହେବ ।

କଟକ
୧୯ । ୩ । ୮୯

॥ ଇତି ॥
**ସମ୍ପାଦକ**

# ଭରଦ୍ୱାଜ ଜାନକୀବଲ୍ଲଭ

**ଡଃ ରତ୍ନାକର ଚଇନି**

ମଣିଷ ଭଲ ମଣିଷଟିଏ ପାଇବା ଆଜିକାଲି ବିରଳ । ସ୍ନେହ-ପ୍ରେମ ଆନ୍ତରିକତାରେ ରସସିକ୍ତ ହୋଇଥିବା ମଣିଷଟିଏ ଏ ଯୁଗରେ ଉଣ୍ଡେଇବା କ୍ରମେ ଦୁରୂହ ବ୍ୟାପାର ହୋଇ ପଡ଼ୁଛି । କାରଣ ସମସ୍ତେ କୁଆଡ଼େ ସ୍ୱାର୍ଥର ବୋଝଗୁଡ଼ିକୁ ଆଗ ଉପରକୁ ଟେକିଧରି ବୈତରଣୀ ପାର ହେବାକୁ ଚାହୁଁଛନ୍ତି । ଦୁଇ ଦୁଇଟା ବିଶ୍ୱଯୁଦ୍ଧର ତାଡ଼ ମଣିଷକୁ ଏଭଳି କରିଚି ବୋଲି କାଳ ଓ କଳାର ତତ୍ତ୍ୱବିଦ୍ ମାନେ ମତ ଦିଅନ୍ତି । କିନ୍ତୁ ସେ ମଣିଷଟିକୁ ତ କାଳ ସେମିତି ଫର୍ମୁଲରେ ପକେଇ ପାରିଲା ନାହିଁ । ସେ କେମିତି ଗୋଟାଏ ନିଆରା ସ୍ନେହୀ ମଣିଷ ରୂପେ ଗଢ଼ି ହୋଇଗଲେ । ସମ୍ଭବତଃ ତାଙ୍କ ଗୁଣ ଥିଲା ଭିନେ ।

## ଭିନେ ଛାଞ୍ଚର ଖେଳଣା :

ଦୁନିଆର ଚଲାପଥକୁ ଯିଏ ନିଜ ପାଦରେ ନ ମାପିଚି ସିଏ ପ୍ରକୃତରେ ସଂସାରର ଅସଲ ପଥିକ ନୁହେଁ । ସିଏ ନିଜେ କଠୋର ମାଟି ଫଟେଇ ବଳିଷ୍ଠ ଉଦ୍ଭିଦ ଭଳି ଉପରକୁ ନ ଉଠିଚି; ସିଏ ଯଥାର୍ଥରେ ଭଲ ମଣିଷ ହୋଇପାରେ ନାହିଁ । ଜୀବନକୁ ଭଲ ଭାବେ ଜାଣିବାକୁ ହେଲେ ପରିସ୍ଥିତି ସହିତ ମୁକାବିଲା କରି ଆଗେଇବାକୁ ପଡ଼େ । ସେଥିପାଇଁ ଦରକାର ମନର ଦୁର୍ବାର ପ୍ରେରଣା, ଓ ଦରକାର ଅଦମନୀୟ ନିଶା । ଜୀବନରେ ଏଭଳି ଗୋଟାଏ କିଛି ଖିଆଲ ମୁଣ୍ଡ ନ ଟେକିଲେ ମଣିଷ ଅନ୍ୟଠାରୁ ନିଆରା ହୋଇପାରେ ନାହିଁ ।

ସମସ୍ତେ କହନ୍ତି, ଘର ମଜବୁତ କରିବାକୁ ଚାହିଁଲେ ମୂଳଦୁଆ ଟାଣ ଥିବା ଦରକାର । ଭିତ୍ତିକୁ ନେଇ ଭୂତ । ସେଦିନ ଗୋଟାଏ ବଳିଷ୍ଠ ବ୍ୟକ୍ତିତ୍ୱର ଗୌରବମୟ ଜୀବନର ପୃଷ୍ଠା ପଡ଼ୁ ପଡ଼ୁ ଆଗରେ ଆସି ଉଭା ହୋଇଗଲା ତାଙ୍କର ମୂଳଦୁଆ, ତାଙ୍କର ସୁଦୃଢ଼ ଭିତ୍ତିଭୂମି । ଏହି ବ୍ୟକ୍ତିଟି ଆମର ସୁପରିଚିତ କବି 'ଭରଦ୍ୱାଜ'ଙ୍କ ବ୍ୟତୀତ ଆଉ କିଏ ଅବା ହୋଇପାରେ ! ଜୀବନର ଦୀର୍ଘ ପଥରେ ଯିଏ 'ଆଚାର୍ଯ୍ୟ' ହେବାକୁ ଶ୍ରେୟ ମନେ କରିଥିଲେ ଓ ଜୀବିକା ଦୃଷ୍ଟିରୁ ସାଜିଥିଲେ ଜଣେ ସମାଲୋଚକ । ମାତ୍ର ପ୍ରକୃତରେ ସେ ନିରୁତା କବିଟିଏ । ତେଣୁ କରି ଜୀବନକୁ ବାସ୍ତବତାର ରାଜପଥରେ ବାରମ୍ବାର କ୍ଷତବିକ୍ଷତ କରି, ସେ ସୃଷ୍ଟି କରି ଚାଲିଲେ ରାଶି ରାଶି କବିତା ।

କବି ଜାନକୀବଲ୍ଲଭ ମହାନ୍ତିଙ୍କ ଭିଟାମାଟି ପୁରୀ ଜିଲ୍ଲା ନିମାପଡ଼ା ଅଞ୍ଚଳର । ତାଙ୍କର ପୈତୃକ ମୂଳଦୁଆ ଥିଲା ଉଗରସାହିରେ । ଆଧୁନିକ ଶିକ୍ଷାର ଆଲୋକ ବହୁ ଆଗରୁ ତାଙ୍କ ପରିବାରକୁ ଆଲୋକିତ କରି ସାରିଥିଲା । ଜାନକୀବଲ୍ଲଭଙ୍କ ଜେଜେବାପା (ପିତାମହ) ଗୋକୁଳାନନ୍ଦ ମହାନ୍ତି ୧୮୮୧ ମସିହାରେ ଭର୍ଣ୍ଣାକୁଲାର ସ୍କଲାରସିପ୍ ପରୀକ୍ଷା ପାଶ୍ କରିଥିଲେ । ସେତେବେଳେ ଏତେବଡ଼ ଶିକ୍ଷା ପାଇବା କିଛି କମ୍ ଗୌରବର କଥା ନ ଥିଲା । ଆଉ ଅଧିକ ଶିକ୍ଷା ଲାଭ କରିବା ସେ ସମୟରେ ମଧ୍ୟ ସମ୍ଭବ ନ ଥିଲା । ତେଣୁ ନିଜ ଗ୍ରାମ ନିକଟବର୍ତ୍ତୀ ଜମିଦାରଙ୍କ ଜମିଦାରୀରେ ସେ ହୋଇଥିଲେ ତହସିଲଦାର । ନିଜର ଭଦ୍ର, ପରୋପକାରୀ ଓ ରକ୍ଷଣଶୀଳ ସ୍ୱଭାବ ଯୋଗୁଁ ସେ ଆଖପାଖ ଅଞ୍ଚଳରେ ଖୁବ ଲୋକପ୍ରିୟ ହୋଇ ଉଠିଥିଲେ । ମାତାମହୀ ଉଜ୍ଜ୍ୱଳମଣି ଥିଲେ ଛାନ୍ଦ ଗୈ ପଢାରେ ପ୍ରବୀଣା ଓ ଚିତ୍ରକଳାରେ ନିପୁଣା । ପୂର୍ବଜଙ୍କର ଏହି ମାଙ୍ଗଳିକ ଗୁଣ-ମାନଙ୍କର ଛିଟିକା ଉତ୍ତର ପୁରୁଷଙ୍କ ଉପରେ ପଡ଼ିବା କିଛି ଅସ୍ୱାଭାବିକ ନୁହଁ ।

ଭରଦ୍ୱାଜ ଜାନକୀବଲ୍ଲଭଙ୍କ ପିତା ନାରାୟଣ ମହାନ୍ତି ଥିଲେ ଖୁବ୍ ବିଦ୍ୟାନୁରାଗୀ । ପିଲାଦିନରୁ ସେ ଥିଲେ ଖୁବ୍ ଶାନ୍ତଶିଷ୍ଟ ଓ ନୀତିବାନ୍ । ତାଙ୍କ ସମୟକୁ ଓଡ଼ିଶାରେ ଏକ ମଣିଷଗଢ଼ା କାରଖାନା ବସି ଯାଇଥିଲା । ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଆଦର୍ଶରେ ଏହି କାରଖାନାଟି

ସତ୍ୟବାଦୀଠାରେ ପ୍ରତିଷ୍ଠିତ ହୋଇଥିଲା । ସତ୍ୟବାଦୀ ବନ ବିଦ୍ୟାଳୟ ଗୋଟିଏ ପବିତ୍ର ଆଦର୍ଶବ୍ୟଞ୍ଜିତ ନାମ । ଏହି ବିଦ୍ୟାଳୟର ଛାତ୍ର ହୋଇଥିଲେ ନାରାୟଣ ମହାନ୍ତି । ନୀତି, ଆଦର୍ଶ ଓ ତ୍ୟାଗକୁ ପୁଞ୍ଜିକରି ଏହି ଜାତୀୟବାଦୀ ବନବିଦ୍ୟାଳୟ ଓଡ଼ିଶାର ଯୁବସମାଜକୁ ଏକ ଆହ୍ୱାନ ଦେଇଥିଲା, 'ଭଲ ମଣିଷ ହୁଅ'। ନାରାୟଣ ମହାନ୍ତି ଭଲ ମଣିଷ ହେଉ ହେଉ ନିଜର ଆର୍ଥିକ ସ୍ଥିତି କଥା ଭୁଲିଗଲେ । ସେ ନିଜର ଉଦାର ଓ ପରୋପକାରୀ ଗୁଣ ଧରି ସମାଜ-ସନ୍ତୁଳିତ ମଣିଷଙ୍କ ସେବାରେ ଲାଗିଗଲେ ।

ସବୁଦିନେ ସବୁକଥା ସହଜ ଭାବରେ ଯାଏ ନାହିଁ । ୧୯୪୩ ମସିହା ଭରଦ୍ୱାଜଙ୍କ ପରିବାର ପାଇଁ ଥିଲା ଅତ୍ୟନ୍ତ ଦୁଃଖଦ ସମୟ । ଗୋଟାଏ ଦିଗରେ ସ୍ୱପ୍ନବିଭୋର ଭାରତୀୟ ମହାଜାତି ସ୍ୱାଧୀନତା ଲାଗି ଆଶାୟୀ ହୋଇ ଉଠୁଥିଲାବେଳେ ନାରାୟଣ ମହାନ୍ତିଙ୍କର ହେଲା ଅକାଳ ବିୟୋଗ । ପତ୍ନୀ ପଙ୍କଜା ଦେବୀ ଖୁବ୍ ଭାଙ୍ଗି ପଡ଼ିଲେ । ଏକେତ ତାଙ୍କର ପାରିବାରିକ ଅବସ୍ଥା ଆର୍ଥିକ ଅସ୍ୱଚ୍ଛଳତା ଭିତର ଦେଇ ଗତି କରୁଥିଲା, ତା'ପରେ ପୁଣି ବଜ୍ରପାତ ହେଲା । ଅର୍ଥଅଭାବର ଦିଗହରା ଗହ୍ୱର ଭିତରେ ବୁଲୁବୁଲୁ ସେ ସ୍ୱପ୍ନ ଦେଖିବାକୁ ଲାଗିଲେ, କେମିତି ତାଙ୍କ ପୁଅ ଜାନକୀବଲ୍ଲଭ ନିଜ ଗୋଡ଼ରେ ଠିଆ ହେବ ? କେମିତି ଟିସ ପାଠ ପଢ଼ିବ ?

## ଏ ଶୁଭ ଲଗନେ ତୁମେ :

ଓଡ଼ିଶାରେ ରଜପର୍ବ ଏକ ଆକର୍ଷଣୀୟ ଜାତୀୟ ଉତ୍ସବ । କୃଷିଭିତ୍ତିକ ସଭ୍ୟତାର ସ୍ମରଣୀୟ ପୃଷ୍ଠାରେ 'ବର୍ଷାର ପ୍ରଥମ ଆଗମନ ଲଗ୍ନରେ ଏହି ଉତ୍ସବ ପାଳିତ ହୁଏ । କୃଷକ ସ୍ୱପ୍ନ ଦେଖେ ଆଗାମୀ ଫସଲ ବର୍ଷଟିର । ତେଣୁ ପିଠାପଣା, ନାଚ ଗୀତ ଚାଲେ । ରଜଦୋଳି ଉଡ଼ିଯାଏ ମନ ଆକାଶର ଅଜଣା ସୀମାକୁ । ଏମିତି ଏକ ମଧୁର ମୁହୂର୍ତ୍ତରେ ନାରାୟଣ ମହାନ୍ତି ଓ ପଙ୍କଜା ଦେବୀଙ୍କ ପରିବାରକୁ ଜଣେ ନବାଗତ ଅତିଥି ଆସିଲେ । ସ୍ୱପ୍ନବିଭୋର ପରିବାରଟି ଆହୁରି ସ୍ୱପ୍ନ ଦେଖିଲା, ଆହୁରି ଆନନ୍ଦରେ ମସଗୁଲ୍ ହୋଇଗଲା ।

୧୯୨୫ ମସିହା ଜୁନ୍ ମାସ ଚଉଦ ତାରିଖ । ଠିକ୍ ରଜ ସଂକ୍ରାନ୍ତି ଦିନ ଭୂମିଷ୍ଠ ହୋଇଥିଲେ ଭରଦ୍ୱାଜ ଜାନକୀବଲ୍ଲଭ । ପିଲାଦିନେ ପିତା-

ମାତାଙ୍କର ଅକୃତ୍ରିମ ସ୍ନେହ ଓ ଆଦର୍ଶ ଜୀବନ ପାଇଁ ନୀତି ଉପଦେଶ ହିଁ ତାଙ୍କ ଭବିଷ୍ୟତ ଜୀବନର ସମ୍ବଳ ହେଲା । ତାଙ୍କ ପାରିବାରିକ ଜୀବନର ସ୍ନେହ ପ୍ରାଚୁର୍ଯ୍ୟ ପାରିବେଶିକ ଜୀବନରେ ନଥିଲା ।

ସେତେବେଳର ନିମାପଡ଼ା ବନ୍ୟାବାତ୍ୟା ପ୍ରପୀଡ଼ିତ ଏକ ନିପଟ ଗ୍ରାମାଞ୍ଚଳ । ଭଲ ଶିକ୍ଷା ଲାଭ କରିବାର ପରିବେଶ ନ ଥିଲା । ଜାନକୀବଲ୍ଲଭଙ୍କ ଜଗଦ୍ଧାତ୍ରୀ ଗାଆଁଟି ଏମିତି ଏକ ବନ୍ୟା ପ୍ରପୀଡ଼ିତ ଅଞ୍ଚଳ । ତେଣୁ ପାଠ ପଢ଼ିବାର ଅଭିଳାଷ ଧରି ଆଗେଇବାକୁ ହେଲେ ହନୁମାନ ଲଙ୍କାକୁ ଗଲାଭଳି ଯିବାକୁ ହେଉଥିଲା । ଗମନାଗମନର ସୁବିଧା ନଥିଲା । ପିଲାଦିନେ ସେ ୧୪-୧୫ ମାଇଲ ବାଟ ଚାଲି ଚାଲି ପୁଣି ଆସୁଥିଲେ । ଅଧିକ ବିଦ୍ୟାଧ୍ୟୟନର ମୋହ ତାଙ୍କର ବାରମ୍ବାର ପ୍ରତିହତ ହେଉଥିଲା ପ୍ରାକୃତିକ ପ୍ରତିବନ୍ଧକଦ୍ୱାରା ।

୧୯୫୩ ମସିହାରେ ଜାନକୀବଲ୍ଲଭ ମାଟ୍ରିକ୍ ପାଶ୍ କଲେ । ଭାଗ୍ୟର ବିଚିତ୍ର ବିଡ଼ମ୍ବନା । ସେଇ ବର୍ଷ ତାଙ୍କର ପିତୃବିୟୋଗ ଘଟିଲା । ପରିବାର ପରିଜନ ଭାଙ୍ଗିପଡ଼ିଲେ । ମାତା ଫିକାଶ ଦେଖି ମୂକ ପାଲଟି-ଗଲେ । ଆର୍ଥିକ ସମ୍ବଳ ନାହିଁ । କେବଳ ମାନସିକ ସମ୍ବଳ ଧରି କେତେଦୂର ଅବା ଆଗେଇ ହେବ । ମାଆଙ୍କୁ ପ୍ରବୋଧନା ଦେଇ ନିଜ ସିଂଘରେ ମାଟି ଖୋଳିବାର ସାହସ ଧରି ଘରୁ ଗୋଡ଼ କାଢ଼ିଲେ ଭରଦ୍ୱାଜ ଜାନକୀବଲ୍ଲଭ । ସେଦିନ ଘରୁ ଗୋଡ଼ କାଢ଼ି ଆଗେଇ ଆସିଥିବା ଯୁବକ ଜାନକୀବଲ୍ଲଭ ଜୀବନରେ ଆଉ କେବେ ପଛକୁ ପାଦ ଫେରାଇ ନାହାନ୍ତି । ଜୀବନ ସହିତ ବାଜି ଲଗେଇ ସେ ଏକଲବ୍ୟ ଭଳି ଆଗେଇ ଚାଲିଲେ ତାଙ୍କର ଲକ୍ଷ୍ୟ ପଥରେ ।

ଜାନକୀବଲ୍ଲଭ କଟକ ଆସିଲେ ।

ଆରମ୍ଭ ହେଇଥିଲା ତାଙ୍କ ଜୀବନ-ସଂଗ୍ରାମର ପ୍ରାଥମିକ ପର୍ବ । ଘରେଇ ଟିଉସନ ଓ ବିଦ୍ୟାଧ୍ୟୟନ ଚାଲିଲା । ବେଳେବେଳେ କ୍ଲାନ୍ତି ଆସି-ଯାଉଥିଲା । ଥକି ପଡ଼ୁଥିବାବେଳେ ଆଖି ଆଗରେ ନାଚି ଯାଉଥିଲା ଗାଁ-ଗଣ୍ଡା, ବନ୍ୟାଜଳ ପରିପୂର୍ଣ୍ଣ ପାଟ ବିଲ । ତା' ଭିତରେ ତାଙ୍କ ଗାଁ । ଆଉ ସେଇ ଗାଆଁରେ ଜୀବନରେ କିଛି ଗୋଟାଏ ହେବାପାଇଁ ଅମାପ

ପ୍ରେରଣା ଦେଉଥିବା ମାଆ । ମାଆଙ୍କ କଥା ମନେ ପଡ଼ିବା ମାତ୍ରେ ଦ୍ୱିଗୁଣ ଉତ୍ସାହରେ ସେ କାମରେ ଲାଗି ପଡ଼ୁଥିଲେ ।

ତାଙ୍କୁ ଆଗେଇବାକୁ ପଡ଼ିବ ।

ଅଧିକ କଷ୍ଟକରି ନିଜ ଗୋଡ଼ରେ ଠିଆ ହେବାକୁ ପଡ଼ିବ । ମଣିଷ ଭଳି ମଣିଷଟିଏ ହେବାକୁ ହେଲେ କେତେ ସାଧନା କରିବାକୁ ପଡ଼େ, ଇଏ ତ କହିବା ନୁହେଁ ।

ଦେଶ ସ୍ୱାଧୀନ ହେବା ବର୍ଷ ସେ ବି.ଏ. ଅନର୍ସ କୃତିତ୍ୱ ସହ ପାଶ କଲେ । ଏହି କାଳର ଦେଶବାସୀଙ୍କ ଅମାପ ଆଶା ଭଳି ସେ ମଧ୍ୟ ଆଶାନ୍ୱିତ ହୋଇପଡ଼ିଲେ । ସାଧନା ବଳରେ ସିଦ୍ଧି ଆସେ ଏକଥା ତାଙ୍କ ଜୀବନର ମହାମନ୍ତ୍ର ଥିଲା । ସ୍ୱାଧୀନତା ଭାରତୀୟଙ୍କ ମନରେ ଯେଉଁଭଳି ସ୍ୱପ୍ନ ମାଖି ଦେଇଥିଲା, ସେମିତି ଏକ ସ୍ୱପ୍ନିଳ ଗୃହର ବାସ୍ତୁଭିତ୍ତି ହୋଇ ଯାଇଥିଲା ଏଇ ଯୁବକଙ୍କ ମନରେ । ସେ ରେଭେନ୍‌ସା କଲେଜରେ ଓଡ଼ିଆ ଏମ୍. ଏ. ପଢ଼ିଲାବେଳକୁ ଆମ ସମାଜର ରୂପ ଥିଲା ଭିନ୍ନ ।

ଏହି ସମୟରେ ଓଡ଼ିଆ ଉପାଧ୍ୟୁତ୍ତର ଶ୍ରେଣୀର ଛାତ୍ର ସଂଖ୍ୟା ଥିଲା ଅତ୍ୟନ୍ତ ନଗଣ୍ୟ । ମୋଟେ ପାଞ୍ଚଜଣ ଛାତ୍ର ସେତେବେଳେ ଅଧ୍ୟୟନ କରୁଥିଲେ । ପଞ୍ଚମ ବାର୍ଷିକ ଶ୍ରେଣୀରେ ଅଧ୍ୟୟନ କରୁଥିଲେ ମାତ୍ର ତିନିଜଣ ଛାତ୍ର । ସେତେବେଳେ ଓଡ଼ିଆରେ ବିନାୟକ ମିଶ୍ରଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ', ସୂର୍ଯ୍ୟନାରାୟଣ ଦାସଙ୍କ 'ଓଡ଼ିଆ ସାହିତ୍ୟ ପରିଚୟ', ମାୟାଧର ମାନସିଂହଙ୍କ 'କବି ଓ କବିତା', ମୃତ୍ୟୁଞ୍ଜୟ ରଥଙ୍କ 'ସାରଳା ଚରିତ', ଗୋପୀନାଥ ନନ୍ଦଶର୍ମାଙ୍କ 'ଭାରତ ଦର୍ପଣ' ଶ୍ୟାମସୁନ୍ଦର ରାଜଗୁରୁଙ୍କ 'ପ୍ରବନ୍ଧାବଳୀ', ଦୁର୍ଗାଚରଣ ରାୟଙ୍କ ସମ୍ପାଦିତ 'ରାଧାନାଥ ଜୀବନୀ' ପ୍ରଭୃତି ମୁଷ୍ଟିମେୟ କେତୋଟି ସମାଲୋଚନାପୁସ୍ତକ ପଢ଼ିବାକୁ ମିଳୁଥିଲା । ପୂର୍ଣ୍ଣାଙ୍ଗ ଆଲୋଚନା ଧାରା ସେ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ସୃଷ୍ଟି ହୋଇ ନଥିଲା । ଛାତ୍ରମାନଙ୍କୁ ନିଜସ୍ୱ ଅଧ୍ୟୟନ ଓ ଅଧ୍ୟବସାୟ ବଳରେ ସାହିତ୍ୟର ଧାରା ଓ ଧାରାକୁ ଅନୁଧ୍ୟାନ କରିବାକୁ ପଡ଼ୁଥିଲା ।

ଓଡ଼ିଆ ବ୍ୟତୀତ ଇଂରାଜୀରେ ଖଣ୍ଡେ ଦି'ଖଣ୍ଡ ପୁସ୍ତକ ମଧ୍ୟ ଏହି ସମୟରେ ଦେଖିବାକୁ ମିଳୁଥିଲା । ତହିଁ ମଧ୍ୟରୁ କଲିକତା ବିଶ୍ୱବିଦ୍ୟାଳୟ

ଦ୍ୱାରା ପ୍ରକାଶିତ ଏବଂ ପ୍ରିୟରଞ୍ଜନ ସେନଙ୍କ ଦ୍ୱାରା ଲିଖିତ 'ମଡର୍ଣ୍ଣ ଓଡ଼ିଆ ଲିଟରେଚର୍' ପୁସ୍ତକ ଖଣ୍ଡିକ ବିଶେଷ ଉଲ୍ଲେଖଯୋଗ୍ୟ ଥିଲା । ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାବ ସମ୍ପର୍କରେ ସାମାନ୍ୟମାତ୍ର ଅନୁଶୀଳନ ହୋଇ ନଥିଲା । ଐତିହାସିକ ବା ତୁଳନାତ୍ମକ ଅଧ୍ୟୟନ ବା ଅଧ୍ୟାପନାର ସୂତ୍ରପାତ ବି ହୋଇ ନଥିଲା । ଆଲୋଚନା ଥିଲା, ମୁଖ୍ୟତଃ ବ୍ୟାଖ୍ୟା-ସର୍ବସ୍ୱ । ପରୀକ୍ଷାରେ ବି ଅନୁରୂପ ଢଙ୍ଗରେ ପ୍ରଶ୍ନ ପଡ଼ୁଥିଲା । ପ୍ରଶ୍ନକର୍ତ୍ତାଙ୍କ ଚିନ୍ତାଧାରା ଥିଲା ବଡ଼ ଅଦ୍ଭୁତ । ସମ୍ଭବତଃ ଅଧିକାଂଶ ପ୍ରଶ୍ନକର୍ତ୍ତା ଥିଲେ ଅଣ-ଓଡ଼ିଆ । ତେଣୁ ସେମାନେ ପ୍ରଶ୍ନ ପଚାରିଲାବେଳେ ତାହାର ସ୍ୱରୂପକୁ ଏକ ମିଶ୍ର ଭାଷା ଶୈଳୀରେ ପରିଣତ କରି ଦେଉଥିଲେ ଯଥା—

"Compare ଋତୁ ବର୍ଣ୍ଣନା of ଧନକୃଷ୍ଣ with that of ଅଭିମନ୍ୟୁ ସାମନ୍ତସିଂହାର with apt quotations"

ଏଭଳି ଏକ ପରିବେଶରେ ଭରଦ୍ୱାଜ ଜାନକୀବଲ୍ଲଭ ଓଡ଼ିଆ ଅଧ୍ୟୟନ କଲେ । ମାତ୍ର ତାଙ୍କର ସଂଗ୍ରାମୀ ଆତ୍ମା ଟି ଏଭଳି ପରିବେଶକୁ ସୁସ୍ଥ ଓ ସ୍ୱାଭାବିକ ବୋଲି ଗ୍ରହଣ କରି ନେଇ ପାରିଲା ନାହିଁ । ସେ ଆଉ ଏକ ଦିଗରେ ବଳିଷ୍ଠ ସଂଗ୍ରାମ କରିବାକୁ ଏହି କାଳରୁ ପ୍ରତିଜ୍ଞାବଦ୍ଧ ହେଲେ । ଓଡ଼ିଆ ସମାଲୋଚନା ସାହିତ୍ୟର ଦାରିଦ୍ର୍ୟ ଦୂର କରିବାକୁ ପଡ଼ିବ, ଓଡ଼ିଆ ସାହିତ୍ୟରେ ନୂତନ ଦିଗ-ଦିଗନ୍ତ ଉଦ୍‌ଘାଟନ କରିବାକୁ ହେବ ।

ସେ ଏମ୍. ଏ. ପାଶ୍ କଲେ ୧୯୪୯ ମସିହାରେ । ସେହି ବର୍ଷ ସେ ଫକୀରମୋହନ କଲେଜ ବାଲେଶ୍ୱରରେ ଅଧ୍ୟାପନା କର୍ମରେ ନିଯୁକ୍ତ ହେଲେ । ବୋଧହୁଏ ଦୁର୍ଦ୍ଧର୍ଷ ସାହିତ୍ୟ-ସେନାନୀ ଫକୀରମୋହନ ତାଙ୍କ ସାହିତ୍ୟିକ କର୍ମର ଆଦର୍ଶ ହୋଇଗଲେ । ନିଜ କାମରେ ସାହାଯ୍ୟ କରିବାକୁ ଯଦି କେହି ନାହାନ୍ତି ତେବେ ଏକାକୀ ଆଗେଇ ଯିବାକୁ ହେବ । ଏହିଭଳି ଏକ ପ୍ରେରଣା ବାଲେଶ୍ୱର ମାଟି ଭରିଦେଲା ଯୁବ ଅଧ୍ୟାପକ ଭରଦ୍ୱାଜ ଜାନକୀବଲ୍ଲଭଙ୍କ ମନରେ ।

## ଏକା ଏକା ଏକଲବ୍ୟ :

ସାହିତ୍ୟ ସଂସାରର ସୈନିକ ହେଲେ ଗୋଟାଏ ଅଦ୍ଭୁତ ନିଶା ମୁଣ୍ଡକୁ ଝାଙ୍କେ । ସେତେବେଳକୁ ସ୍ଥାନ ଅସ୍ଥାନ ହେଜ ରହେନି, କାଳ

ଅକାଳ ବର୍ଷରେ କରିବାକୁ ହେତୁ ଆସେନା । କେମିତି ଗୋଟାଏ ପ୍ରମତ୍ତ ଭାବ ମନକୁ ଉଦ୍‌ଭ୍ରାନ୍ତ କରି ପକାଏ । କିଛି ଗୁଡ଼ାଏ ପ୍ରକାଶ କରିବାର ପ୍ରବଣତା ସାରା ଚେତନ ଜଗତକୁ ମାଡ଼ିଯାଏ । ସେହି ସମୟରେ ତ କବିତାର ଖଇବାଣ ଫୁଟେ ।

କିଏ ଜଣେ କହିଥିଲେ, ହୃଦୟରେ କ୍ଷତ ହୋଇ ନ ଥିଲେ କବି ହୋଇ ହୁଏ ନାହିଁ, ମାନବିକ ଦରଦ ନଥିଲେ ଭଲ କବି-ପୁରୁଷଟିଏ ଉଠୁରେ ନାହିଁ । ସମ୍ଭବତଃ ଅନେକ ଦରଦ, ଅନେକ ଅଜଣା କ୍ଷତ ହୃଦୟରେ ଧରି ଏହି କବି-ମଣିଷଟି ବାଲେଶ୍ୱରରେ ଓହ୍ଲାଇଥିଲେ । ତେଣୁ ବାଲେଶ୍ୱର ମାଟି ସ୍ପର୍ଶ କରୁ ନ କରୁଣୁ ଆଗ ସେ ନିଜ ପାଖରେ ଶପଥ ନେଲେ, ସେ ପରିଲେ କବି ହେବେ ।

ଯଥାର୍ଥରେ ସେ କବିଟିଏ ହେଲେ । କେବଳ କବି ନୁହେଁ, କବି ମନୀଷୀ । ଓଡ଼ିଶାରେ ଓଡ଼ିଆ ବିଭାଗରେ ଏବଂ ଅଧ୍ୟାପନା କ୍ଷେତ୍ରରେ ଦୁଇଜଣ ଜାନକୀବଲ୍ଲଭ ଦେଖା ଦେବାରୁ ସେ ହେଲେ ଭରଦ୍ୱାଜ ଜାନକୀବଲ୍ଲଭ । ନିଜ ଗୋତ୍ର ନାମଧରି ସେ ନିଜର ସ୍ୱାତନ୍ତ୍ର୍ୟ ପ୍ରକାଶ କଲେ । ଅନ୍ୟ ଭାଷାରେ ମଧ୍ୟ କୁହାଯାଇପାରେ ଯେ, ସେ କବି-ମନୀଷୀ ହେବାପାଇଁ ଋଷିକୁଳ ଖୋଜୁଥିଲେ । ସେତିକି ସେ ପାଇଗଲେ 'ଭରଦ୍ୱାଜ'ଙ୍କ ପାଖରୁ ।

ବାଲେଶ୍ୱର ଅବସ୍ଥାନ କାଳରେ ତାଙ୍କର 'ଶର୍ମିଳା' (୧୯୫୧) କବିତା ପୁସ୍ତକ ଆତ୍ମପ୍ରକାଶ କଲା । ସେତେବେଳକୁ ସେ ବାଲେଶ୍ୱରର ପାଣି-ପବନ ସହିତ ନିଜକୁ ସାମିଲ କରି ନେଇସାରି ଥିଲେ । ସେ ୧୯୫୦ରୁ ୧୯୫୫ ମସିହା ଯାଏ ବାଲେଶ୍ୱରସ୍ଥ ଅଗ୍ରଣୀ ସାହିତ୍ୟ ସଂସ୍ଥା "ଫକୀର ମୋହନ ସାହିତ୍ୟ ପରିଷଦ"ର ସଭାପତି ଦାୟିତ୍ୱ ତୁଲାଉଥିଲେ । ଏଇଠି ଥିଲାବେଳେ ସେ ଅନେକ ସାହିତ୍ୟିକ କର୍ମରେ ଜଡ଼ିତ ହୋଇ ପଡ଼ିଥିଲେ । ପ୍ରକୃତରେ ସେ ଯେଉଁଭଳି ପରିବେଶଟି ଖୋଜୁଥିଲେ ବାଲେଶ୍ୱର ତାହା ତାଙ୍କୁ ଜୁଟାଇ ଦେଲା ।

୧୯୫୬ ମସିହାରେ ସେ କଟକ ଆସି ରେଭେନ୍‌ସା କଲେଜର ଓଡ଼ିଆ ଅଧ୍ୟାପକ ଭାବେ ଯୋଗଦେଲେ । ଏଠାରେ ସେ ପ୍ରଥମ ପର୍ଯ୍ୟାୟରେ

ପ୍ରାୟ ଷୋଳବର୍ଷ ଅବସ୍ଥାନ କଲେ । କଟକ ଅନେକ ଦିନୁ ଓଡ଼ିଶାର ସାଂସ୍କୃତିକ ଚେତନାର ପ୍ରାଣକେନ୍ଦ୍ର ହୋଇ ସାରିଥିଲା । ତେଣୁ ଉଦ୍‌ଧବ ଜାନକୀବଲ୍ଲଭଙ୍କୁ କଟକ ଖୁବ୍ ପ୍ରଶସ୍ତି ଆଣିଦେଲା । ବୃହତ୍ତର ପରିବେଶରେ ସେ ନିଜକୁ ପ୍ରତିଷ୍ଠିତ କରିବାକୁ ବେଶ୍ ସୁଯୋଗ ପାଇଲେ ।

ଅବଶ୍ୟ କଟକ ବହୁ ଆଗରୁ ତାଙ୍କର ପରିଚିତ ସହର ହୋଇ ସାରିଥିଲା । ତଥାପି ଜଣେ ଅଧ୍ୟାପକ ଭାବରେ ନିଜର କୃତି ଓ କୀର୍ତ୍ତିକୁ ବହିଃପ୍ରକାଶ କରିବାକୁ ତାଙ୍କୁ ଅଧିକ ସୁଯୋଗ ମିଳିଲା । କଟକରେ ସମସ୍ତ ପୁସ୍ତକ ପ୍ରକାଶନ ସଂସ୍ଥା ଥିଲା । ତେଣୁ ତାଙ୍କର କାବ୍ୟ-କବିତା, ଅନୁବାଦ ଓ ଆଲୋଚନାମାନ ପ୍ରକାଶ ପାଇବା ସହଜ ହେଲା । ତା'ଛଡ଼ା କଟକରୁ ପ୍ରାୟତଃ ଓଡ଼ିଶାର ବିଖ୍ୟାତ ପତ୍ରପତ୍ରିକାମାନ ଆତ୍ମପ୍ରକାଶ କରୁଥିଲା । ସେଥିରେ ଜାନକୀବଲ୍ଲଭଙ୍କୁ ଓଡ଼ିଶାର ପାଠକମାନେ ବାରମ୍ବାର ଦେଖିବାର ସୁଯୋଗ ପାଇଲେ ।

'ଉତ୍କଳ ସାହିତ୍ୟ ସମାଜ' କେବଳ କଟକର କାହିଁକି, ଓଡ଼ିଶାର ଅନ୍ୟତମ ପ୍ରାଚୀନ ସାହିତ୍ୟାନୁଷ୍ଠାନ । ଜାନକୀବଲ୍ଲଭ କଟକରେ ଅବସ୍ଥାନ କରୁଥିଲାବେଳେ ଏହି ଅନୁଷ୍ଠାନର ସକ୍ରିୟ ସଭ୍ୟ ହୋଇଥିଲେ । ତାଙ୍କର ଏକାନ୍ତ ଅନୁରାଗ ଓ ସାହିତ୍ୟପ୍ରେମିତା ତାଙ୍କୁ ଏହି ଅନୁଷ୍ଠାନର ସମ୍ପାଦକ ପଦରେ ବେଶ୍ କିଛି ବର୍ଷ ବସାଇ ଦେଇଥିଲା । ସେ ୧୯୬୮ରୁ ୧୯୭୩ ମସିହା ଯାଏ ଉତ୍କଳ ସାହିତ୍ୟ ସମାଜର ସମ୍ପାଦକ ଥିଲେ ।

୧୯୭୦ ମସିହାରେ ସେ ସ୍ଥାନାନ୍ତରିତ ହୋଇ ଗଙ୍ଗାଧର ମେହେର କଲେଜ ସମ୍ବଲପୁରରେ ଯୋଗ ଦେଲେ । ୧୯୭୩ ମସିହା ଯାଏ ଏହି ସ୍ଥାନରେ ରହି ସେ ବି. ଜେ. ବି. କଲେଜ ଭୁବନେଶ୍ୱରକୁ ବଦଳି ହୋଇ ଆସିଲେ । ୧୯୭୫ ମସିହା ଯାଏ ଭୁବନେଶ୍ୱରରେ ରହିବା ପରେ, ପୁଣି ତାଙ୍କୁ କଟକ ରେଭେନ୍‌ସା କଲେଜକୁ ଆସିବାକୁ ହେଲା ଓଡ଼ିଆ ବିଭାଗର ପ୍ରଫେସର୍ ଭାବେ । ଏହି ପର୍ଯ୍ୟାୟରେ ତାଙ୍କର ସ୍ଥାନାନ୍ତର ତାଙ୍କ ସୃଜନ କର୍ମରେ ବିଶେଷ ବାଧା ସୃଷ୍ଟି ନ କରି ବରଂ ଗଭୀର ଅନୁଭୂତିର ଖୋରାକ ଯୋଗାଇଲା । ଶିକ୍ଷା ବିଭାଗର ଏବଂ ସରକାରୀ କର୍ମରେ ଅବସର ଗ୍ରହଣ କରିବା ପର୍ଯ୍ୟନ୍ତ ସେ ରେଭେନ୍‌ସା କଲେଜରେ ଅବସ୍ଥାନ କରିଥିଲେ । ୧୯୮୨ ମସିହାରେ ସେ ସରକାରୀ କର୍ମରୁ ଅବସର ଗ୍ରହଣ କରିଥିଲେ ।

ସେ ପ୍ରଥମ ପର୍ଯ୍ୟାୟରେ ରେଭେନ୍‌ସା କଲେଜରେ ଥିବା ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ପି ଏଚ୍. ଡ଼ି. ଡ଼ିଗ୍ରୀ ଲାଭ କରିଥିଲେ । ଏହା ୧୯୬୭ ମସିହାର ଘଟଣା । ତାଙ୍କ ଗବେଷଣା ନିବନ୍ଧର ନାମ ହେଉଚି 'ଓଡ଼ିଆ ଗୀତିକାବ୍ୟ ।' ଏହା ଏକ ବହୁଚର୍ଚ୍ଚିତ ଗ୍ରନ୍ଥ ।

ଦିନେ ନିଃସଙ୍ଗ ପଦାତିକ ଭଳି ଆଗେଇ ଚାଲିଥିବା ଏକଲବ୍ୟ ନିଜେ ଗୁରୁ ହେଲି । ହୃଏତ ଅନେକ ଏକଲବ୍ୟ ଗଢ଼ିଲି । ଓଡ଼ିଆ ସାହିତ୍ୟର ଧରା ଓ ଧାରାକୁ ମାର୍ଜିତ କଲି । କିଛି ନଥିବା କ୍ଷେତ୍ରରେ କିଛି କରି ଦେଖାଇଲି । ନିଜ ଜୀବନର ରାଜପଥ ଧାରକୁ ପ୍ରଶସ୍ତ କଲି । ଅନେକ ଭିତରେ ସେ ହେଲି ଏକ । ଅନେକଙ୍କୁ ସେ ଏକାଧିକ ବାର ପ୍ରତିନିଧିତ୍ୱ କଲି ।

## ଅନେକର ପ୍ରତିନିଧି :

ଅନେକ ଭିତରେ ହଜିଯିବା ସହଜ, କିନ୍ତୁ ଅନେକରେ ଏକ ହେବା ବଡ଼ କଷ୍ଟ । ନିଜ ସିଂହାସରେ ମାଟି ତାଡ଼ି ଯେ ନିଜ ସ୍ଥିତିକୁ ଦୃଢ଼ ନ କରିଛି, ସିଏ ଅନେକରେ ଏକ ହୁଅନ୍ତା ଅବା କେମିତି ? ଭିନ୍ନ ଗ୍ରୁଞ୍ଜ ଗଢ଼ା ଏଇ ସରଳ କବି-ମଣିଷଟି ଜୀବନରେ ଅନେକ ଥର ଅନେକ ଓଡ଼ିଆଙ୍କର ପ୍ରତିନିଧି ସାଜିଛି । ଅନେକ ସ୍ଥାନରେ ସେ ଓଡ଼ିଶାର ଓ ଓଡ଼ିଆର ହୋଇ ମୁହଁ ଦେଖାଇଛି ।

(କ) ସେ ଓଡ଼ିଶା ସାହିତ୍ୟ ଏକାଡେମୀ ସଦସ୍ୟ ଭାବରେ ଅନେକ ବର୍ଷ ମନୋନୀତ ହୋଇ କାର୍ଯ୍ୟ କରିଛନ୍ତି । ତାଙ୍କର କୃତି ଓ କୀର୍ତ୍ତି ତାଙ୍କୁ ଏହି ସ୍ଥାନରେ ନେଇ ପହଞ୍ଚାଇ ପାରିଛି ।

(ଖ) ୧୯୬୯ ମସିହାରେ ସେ ଓଡ଼ିଆ ସାହିତ୍ୟର ପ୍ରତିନିଧି ସାଜି କେରଳ ଯାଇଥିଲେ । ୫ମ ଅଖିଳ ଭାରତୀୟ ଲେଖକ ସମ୍ମେଳନରେ ସେ ଥିଲେ ଓଡ଼ିଶାର ବରେଣ୍ୟ ପ୍ରତିନିଧି ।

(ଗ) ୧୯୭୦ ମସିହାରେ ଅଖିଳ ଭାରତ ପି. ଇ. ଏନ୍. ଅଧିବେଶନ ବସିଥିଲା ପାତିଆଲାରେ । ଏହି ଅଧିବେଶନରେ ସେ ଓଡ଼ିଆ ଭାଷା-ସାହିତ୍ୟର ସାଂସ୍କୃତିକ ପ୍ରତିନିଧି ସାଜିଥିଲେ ।

(ଘ) ପ୍ରତ୍ୟେକ ଭାଷାର ପ୍ରତିନିଧି କେନ୍ଦ୍ର, ସାହିତ୍ୟ ଏକାଡେମୀରେ ରହିବା ନିୟମ । ଏହି ବିଧି ଅନୁସାରେ ସେ ୧୯୭୭ ରୁ ୧୯୮୨ ପର୍ଯ୍ୟନ୍ତ ଓଡ଼ିଶାର ପ୍ରତିନିଧି ଥିଲେ ।

(ଙ) ସେ ଦୁଇବର୍ଷ ପାଇଁ ଓଡ଼ିଶାର ପ୍ରାଚୀନ ସାହିତ୍ୟାନୁଷ୍ଠାନ 'ଉତ୍କଳ ସାହିତ୍ୟ ସମାଜ'ର ସଭାପତି ଥିଲେ । ୧୯୮୦-୮୧ ।

(ଚ) ନିଜର ଉଲ୍ଲେଖନୀୟ ସାହିତ୍ୟିକ ଅବଦାନ ଯୋଗୁଁ ତାଙ୍କୁ ଓଡ଼ିଶାର ସୁପ୍ରସିଦ୍ଧ ବିଷୁବସମ୍ମେଳନ ବାର୍ଷିକ ଉତ୍ସବର ସଭାପତି ଆସନ ଅଳଙ୍କୃତ କରିବାକୁ ହୋଇଥିଲା ।

(ଛ) ସେ ୧୯୮୪ରେ ନ୍ୟାସନାଲ ବୁକ୍ ଟ୍ରଷ୍ଟ ଦିଲ୍ଲୀର ସର୍ବ-ଭାରତୀୟ ସାହିତ୍ୟ ସମ୍ମେଳନରେ ପ୍ରତିନିଧିତ୍ୱ କରିଥିଲେ ।

(ଜ) ସମ୍ପ୍ରତି ସେ ସାରଳା ପୁରସ୍କାର କମିଟିର ସଦସ୍ୟ ।

ଏସବୁ ଘଟଣାର ସୀମା ନାହିଁ କି ହିସାବ ମଧ୍ୟ ନାହିଁ । ମଣିଷର ରୁଚି ଯେତେବେଳେ ମଣିଷଠାରୁ ବଡ଼ ହୋଇଯାଏ, ସେତେବେଳେ କୌଣସି କଥାର ହିସାବ ରଖିବାକୁ ଆଉ ଆଗ୍ରହ ଆସେ ନାହିଁ । ସେମିତି ଆଗ୍ରହ କମିଯାଏ ପୁରସ୍କାର ଆଉ ସମ୍ବର୍ଦ୍ଧନା ଉପରୁ । ଜୀବନର ପ୍ରଥମ ପୁରସ୍କାର ଏକାନ୍ତ ସ୍ମରଣୀୟ ହୋଇପାରେ । ମାତ୍ର ଯେତେବେଳେ ଏକ ପରେ ଅନେକ ଆସେ, ତାହା କ୍ରମଶଃ ଏକପ୍ରକାର ପର୍ବରେ ପରିଣତ ହୋଇଯାଏ । ଜାନକୀବଲ୍ଲଭଙ୍କ କ୍ଷେତ୍ରରେ ତାହା ହେବା କିଛି ଅସମ୍ଭବ ଘଟଣା ନଥିଲା । ସେ ଅନେକ ପୁରସ୍କାର ଲାଭ କରିଛନ୍ତି । ଯଥା—

(କ) ୧୯୬୧ ମସିହାରେ କବିତା ରଚନାପାଇଁ ବିଷୁବ ପୁରସ୍କାର ।

(ଖ) ୧୯୬୩ ମସିହାରେ ପୁଣିଥରେ ଉଲ୍ଲେଖନୀୟ କାବ୍ୟକୃତି ପାଇଁ ବିଷୁବ ସମ୍ମାନ ଲାଭ ।

(ଗ) ୧୯୭୭ ମସିହାରେ ଶ୍ରେଷ୍ଠ ଶିଶୁ କାହାଣୀ ସଂଗ୍ରହର ରଚୟିତା ଭାବେ ଓଡ଼ିଶା ଶିଶୁ ସାହିତ୍ୟ ସମିତି ପକ୍ଷରୁ ପୁରସ୍କୃତ ।

(ଘ) ୧୯୮୮ ମସିହାର କ୍ଷେତ୍ରବାସୀ ସାହିତ୍ୟ ବିଦ୍ୟା ପୁରସ୍କାର ଲାଭ ।

ଏଇ କ'ଣ ସବୁ କଣ୍ଟ ? ନା—ଜୀବନରେ ଅନେକ ହୁଏତ ଏମିତି ଆସିବ । ମାତ୍ର ସାଧକର ପ୍ରଶସ୍ତି ଓ ପୁରସ୍କାର ନିକଟରେ ଅଟକି ରହିବା ଧର୍ମ ନୁହେଁ । ତାଙ୍କର ଲକ୍ଷ୍ୟ ଚରୈବେତି···ଚରୈବେତି······

## ସାହିତ୍ୟ ପରିବାର :

ଜଣେ ସାହିତ୍ୟିକର ସୃଷ୍ଟି ସବୁ ହିଁ ତାଙ୍କ ପରିବାରର ସଭ୍ୟ । ସେ ପରିବାରରେ 'ଆଗପଛ' ହୁଏତ ଥାଇପାରେ; ମାତ୍ର ସାନ ବଡ଼ ଭାବ ନାହିଁ । ସେଠି ସମସ୍ତେ ସମାନ । ଭରଦ୍ୱାଜ ଜାନକୀବଲ୍ଲଭଙ୍କ ପରିବାରଟି ବେଶ ବଡ଼ । ସେମାନଙ୍କୁ ସମୟାନୁକ୍ରମେ ସଜେଇ ବସାଇଲେ ଏମିତି ହେବ—

### କବିତା :

(କ) ୧ । ଜୀବନ୍ତିକ—୧୯୫୧
୨ । ଗ୍ଲେସିଅରୁ ବଡ଼—୧୯୬୧
୩ । ବିଚିତ୍ରବର୍ଣ୍ଣା—୧୯୭୩

### ଶିଶୁ ଓ କିଶୋର ସାହିତ୍ୟ :

(ଖ) ୧ । ଦେଶ-ବିଦେଶର କାହାଣୀ—୧ମ—୧୯୫୭
୨ । ଦେଶ-ବିଦେଶର କାହାଣୀ—୨ୟ—୧୯୮୦
୩ । କାହାଣୀ ସଂଗ୍ରହ—୧୯୫୮
୪ । ଭାରତର ଗ୍ରାମ୍ୟ ଗଳ୍ପ—୧୯୬୧
୫ । ଦରିଆପାରିର କାହାଣୀ—୧୯୭୨
୬ । ଭାରତର ଗାଉଁଲି ଗଳ୍ପ-୨ୟ—୧୯୭୮
୭ । ଭାରତର ଗାଉଁଲି ଗଳ୍ପ-୩ୟ—୧୯୮୦
୮ । ଆମ ଗାଉଁଲି ଗଳ୍ପ—୧୯୮୦

### ଅନୁବାଦ :

(ଗ) ୧ । କଥା ଓ କଥାକାର—୧୯୫୫
୨ । ଦେଶ-ବିଦେଶର ଗଳ୍ପ—୧୯୫୮
୩ । ଦୂର ଜଗତର କଥା —୧୯୭୯
୪ । କୁମାରନ୍ ଆସାନ—୧୯୮୪

## ସାହିତ୍ୟ ଆଲୋଚନା :

(ଘ) ୧ । ଓଡ଼ିଆ ସାହିତ୍ୟ ପରିକ୍ରମା—୧୯୫୬
୨ । ଓଡ଼ିଆ ଛନ୍ଦର ବିକାଶ—୧୯୬୧
୩ । ଆଧୁନିକ ଓଡ଼ିଆ ସାହିତ୍ୟ—୧୯୬୩
୪ । ସୃଷ୍ଟି ଓ ସମୀକ୍ଷା—୧୯୬୪
୫ । ଓଡ଼ିଆ ଗଦ୍ୟ ପରିଚୟ—୧୯୬୫
୬ । ଓଡ଼ିଆ ଗୀତିକାବ୍ୟ—୧୯୬୬
୭ । କବି ଅଭିମନ୍ୟୁ—୧୯୬୭
୮ । କଳା ଓ କଳାକାର—୧୯୬୮
୯ । ନବଯୁଗର କବି ଓ କାବ୍ୟଧାରା—୧୯୬୮
୧୦ । ଆଧୁନିକ ଭାରତୀୟ ସାହିତ୍ୟ—୧୯୬୯
୧୧ । ଭାରତୀୟ ସାହିତ୍ୟର ଇତିହାସ—୧୯୭୭
୧୨ । ପ୍ରାଚୀନ ଗୀତିକବି ଓ କାବ୍ୟଧାରା—୧୯୮୦
୧୩ । କବିସୂର୍ଯ୍ୟ ବଳଦେବ ରଥ—୧୯୮୦
୧୪ । ଦ୍ରବ୍ୟ ଅଦ୍ରବ୍ୟ—୧୯୮୦
୧୫ । ଓଡ଼ିଆ ବୈଷ୍ଣବ ପଦ୍ମ ସାହିତ୍ୟ—୧୯୮୨

## ଜୀବନୀ :

(ଙ) ୧—ଲିଓ ଟଲଷ୍ଟୟ—୧୯୬୧
୨—ସାରସ୍ୱତ ଗୌରବ ୧ମ ଓ ୨ୟ—୧୯୮୪

## ସଂକଳନ ଓ ସମ୍ପାଦନା :

(ଚ) ୧—ଫକୀରମୋହନ ପରିକ୍ରମା—୧୯୫୩
୨ । ଭକ୍ତିମାଳା—୧୯୬୦
୩ । ଓଡ଼ିଆ ପ୍ରେମ କବିତା—୧୯୬୧
୩ । ବ୍ରଜସୁନ୍ଦର ସ୍ମାରକ ଗ୍ରନ୍ଥ—୧୯୬୨
୫ । କୃଷ୍ଣମୋହନ ଗ୍ରନ୍ଥାବଳୀ—୧୯୬୬
୬ । ସୁଭାଷିତ ପଦାବଳୀ—୧୯୬୮
୭ । ଓଡ଼ିଆ ଭକ୍ତିକବିତା—୧୯୭୧

୮ । ଚଉତିଶା ସଂକଳନ—୧୯୭୭
୯ । ଓଡ଼ିଆ ଗୀତିକାବ୍ୟ ସଂକଳନ—୧୯୭୭
୧୦ । ଘନକୃଷ୍ଣ ଗୀତାବଳୀ—୧୯୭୯
୧୧ । ସୋମନାଥ ଗୀତାବଳୀ—୧୯୮୦
୧୨ । ବୈଷ୍ଣବ ପଦାବଳୀ—୧୯୮୦

ଇଂରାଜୀ :

(ଛ) ୧ । An Approach to Oriya Literature—1988

ଓଡ଼ିଆ ସାହିତ୍ୟର ଅନେକ ବିଭାଗକୁ ସମୃଦ୍ଧ କରିଥିବା ଏହି ସ୍ରଷ୍ଟାଙ୍କର ଓଡ଼ିଆ ସମାଲୋଚନା ସାହିତ୍ୟ ସମ୍ବନ୍ଧରେ ନିଜସ୍ୱ ବକ୍ତବ୍ୟ ବେଶ ସ୍ପଷ୍ଟ । ସେ କହନ୍ତି—"ସ୍ୱାଧୀନତା ପ୍ରାପ୍ତି ବେଳକୁ ଓଡ଼ିଶାରେ ଏକମାତ୍ର ସରକାରୀ କଲେଜ ଥିଲା ରେଭେନ୍‌ସା କଲେଜ । ସ୍ୱାଧୀନତା ପ୍ରାପ୍ତିର ଅବ୍ୟବହିତ ପରେ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ମହାବିଦ୍ୟାଳୟ ସବୁ ପ୍ରତିଷ୍ଠିତ ହେଲା । ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ସାଙ୍ଗେ ସଙ୍ଗେ ଓଡ଼ିଆ ସାହିତ୍ୟ ଆଇ. ଏ. ଓ ବି. ଏ. ଶ୍ରେଣୀରେ ବାଧ୍ୟତାମୂଳକ ପାଠ୍ୟଭାବେ ଗ୍ରହଣ କରାଯାଇଥିଲା । ରେଭେନ୍‌ସା କଲେଜରେ ଓଡ଼ିଆରେ ଉପାଧି ଉତ୍ତର ଶିକ୍ଷାଦାନର ବ୍ୟବସ୍ଥା ହୋଇଥିଲା ।

ଏହିଭଳି ପରିବେଶରେ ଆମେ କେତେଜଣ ଓଡ଼ିଆ ଅଧ୍ୟାପନା କ୍ଷେତ୍ରକୁ ଆସିଲୁ । ଅଧ୍ୟାପନାକୁ ସରସ, ତଥ୍ୟଭିତ୍ତିକ କରିବାପାଇଁ ଅଧିକ ଅନୁଶୀଳନ ଏକାନ୍ତ ଆବଶ୍ୟକ । ଏ ବିଷୟରେ ମୁଁ କାର୍ପଣ୍ୟ କରିନଥିଲି । ଏହାଛଡ଼ା ମୋର ସୌଭାଗ୍ୟ, ମୋତେ ଦୀର୍ଘକାଳ ରେଭେନ୍‌ସା କଲେଜ ଓଡ଼ିଆ ଏମ୍. ଏ. କ୍ଲାସରେ ଶିକ୍ଷାଦାନର ସୁଯୋଗ ମିଳିଥିଲା ।

ସେତେବେଳେ ଏମ୍. ଏ ପାଠ୍ୟକ୍ରମରେ ବିଶେଷ ଅଧ୍ୟୟନ ଲାଗି କେତେଗୁଡ଼ିଏ ସ୍ୱତନ୍ତ୍ର ପତ୍ର ବ୍ୟବସ୍ଥା ଥିଲେ ହେଁ ସେହି ବିଷୟମାନଙ୍କରେ ଶିକ୍ଷାଦାନର କୌଣସି ବ୍ୟବସ୍ଥା ନ ଥିଲା । ବୈଷ୍ଣବଧର୍ମ ଓ ଉତ୍କଳୀୟ ବୈଷ୍ଣବଧର୍ମ, ଏଇ ଏକମାତ୍ର ବିଷୟରେ ଯାହା କିଛି ଅଧ୍ୟୟନ ଓ ଅଧ୍ୟାପନା ହେଉଥିଲା । ରାଧାନାଥ ପରବର୍ତ୍ତୀ ସାହିତ୍ୟ ଓ ଓଡ଼ିଆ ଗୀତିକାବ୍ୟ ଏଇ

ଦୁଇଟି ବିଷୟ ମଧ୍ୟ ସ୍ୱତନ୍ତ୍ର ପତ୍ର ଭାବରେ ନିର୍ଦ୍ଦିଷ୍ଟ ହୋଇଥିଲେ ହେଁ ସେ ବିଷୟରେ ଶିକ୍ଷାଦାନର ବ୍ୟବସ୍ଥା ନ ଥିଲା । ଏହି ପରିସ୍ଥିତିରେ ମୁଁ ଉକ୍ତ ଦୁଇଟି ବିଷୟ ଅଧ୍ୟାପନାର ଦାୟିତ୍ୱ ନେଇଥିଲି । ସେ ସମ୍ପର୍କରେ ଅନୁଶୀଳନ କରିବା ସଙ୍ଗେ ସଙ୍ଗେ କିଛି ଆଲୋଚନା ମଧ୍ୟ ଲେଖିବାକୁ ଆରମ୍ଭ କରିଥିଲି । ମୋର ଏଇ ପ୍ରୟାସରୁ ଆତ୍ମପ୍ରକାଶ କଲା 'ଆଧୁନିକ ଓଡ଼ିଆ ସାହିତ୍ୟ ।"

ସେହିପରି ଅନ୍ୟତମ ବିଷୟ ଓଡ଼ିଆ ଗୀତିକାବ୍ୟ ସମ୍ପର୍କରେ କୌଣସି ବିଧିବଦ୍ଧ ଆଲୋଚନା ହୋଇ ନ ଥିଲା । ସେ ସମ୍ପର୍କରେ ମୋର ଧାରଣା ମଧ୍ୟ ଥିଲା ଅତ୍ୟନ୍ତ ସୀମିତ । ପ୍ରାଚୀ ସମିତି ପକ୍ଷରୁ ପ୍ରକାଶିତ ଜଗନ୍ନାଥ ଚଉତିଶା ମଧୁରେନ୍ଦ୍ର ଜଣାଣ ଭଜନ ପ୍ରଭୃତି କେତେକ ଭକ୍ତି କବିତା ଓ ସଙ୍ଗୀତ ସଂଗ୍ରହ ବ୍ୟତୀତ ଅନ୍ୟ କୌଣସି ସଂକଳନ ମଧ୍ୟ ପ୍ରକାଶ ପାଇ ନଥିଲା । ଏ ସମ୍ପର୍କରେ ଅନୁଶୀଳନ କରିବାକୁ ଯାଇ ମୋତେ ପ୍ରଥମେ ପ୍ରକାଶିତ ଓ ଅପ୍ରକାଶିତ ଗୀତିକାବ୍ୟ ସମୂହର ସଂଗ୍ରହ କାର୍ଯ୍ୟରେ ନିୟୋଜିତ ହେବାକୁ ପଡ଼ିଥିଲା । ବ୍ୟକ୍ତିଗତ ଉଦ୍ୟମରେ ମୁଁ ପ୍ରାୟ ଦୁଇହଜାରରୁ ଅଧିକ ଅପ୍ରକାଶିତ ରଚନା ଓଡ଼ିଶାର ବିଭିନ୍ନ ସ୍ଥାନରୁ ସଂଗ୍ରହ କରିବାକୁ ସକ୍ଷମ ହୋଇଥିଲି ।୧୯୭୬ ମସିହାରେ ମୋ ଦ୍ୱାରା ପ୍ରସ୍ତୁତ ଗବେଷଣାତ୍ମକ ନିବନ୍ଧ 'ଓଡ଼ିଆ ଗୀତିକାବ୍ୟ' ପ୍ରକାଶ ପାଇଥିଲା ।

ଓଡ଼ିଆ ଏମ୍. ଏ. ଶ୍ରେଣୀରେ ଆଉ ଗୋଟିଏ ପାଠ୍ୟ ବିଷୟ ଥିଲା 'ସମକାଳୀନ ଭାରତୀୟ ସାହିତ୍ୟ ।' ଏ ବିଷୟରେ ଓଡ଼ିଆରେ କୌଣସି ପୁସ୍ତକ ପ୍ରକାଶ ପାଇ ନଥିଲା । ଏଥିପାଇଁ ମୋତେ ଇଂରାଜୀ, ବଙ୍ଗଳା, ହିନ୍ଦୀରେ ରଚିତ କେତେକ ଗ୍ରନ୍ଥ ଓ ସ୍ୱତନ୍ତ୍ର ଭାବେ ଲିଖିତ ବହୁ ପ୍ରବନ୍ଧ ଅଧ୍ୟୟନ କରିବାକୁ ପଡ଼ିଥିଲା । ତାହାକୁ ଭିତ୍ତିକରି ମୁଁ ରଚନା କରିଥିଲି "ଆଧୁନିକ ଭାରତୀୟ ସାହିତ୍ୟ ।"

ଏହି ଅବକାଶରେ ମୁଁ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାବ ଓ କେତେକ ସାହିତ୍ୟ ସାଧକଙ୍କ ସମ୍ପର୍କରେ ମଧ୍ୟ ଆଲୋଚନା ପ୍ରସ୍ତୁତ କରିଥିଲି । ଓଡ଼ିଶା ସାହିତ୍ୟ ଏକାଡେମୀ, କଟକ ଆକାଶବାଣୀ ଓ ବହୁ ପତ୍ରପତ୍ରିକାର ସମ୍ପାଦକଙ୍କ ଅନୁରୋଧରେ ମୁଖ୍ୟତଃ ଏଇସବୁ ଗବେଷଣାଧର୍ମୀ ରଚନା ମୋତେ ପ୍ରସ୍ତୁତ କରିବାକୁ ପଡ଼ିଥିଲା । ଅବଶ୍ୟ ନିଜ ଅଭିରୁଚି ଅନୁଯାୟୀ କେତେକ ପ୍ରବନ୍ଧ ମଧ୍ୟ ମୁଁ ରଚନା କରିଥିଲି ।

ତଥାପି ମୁଁ ସ୍ୱୀକାର କରୁଛି, ମୋର ଏଇସବୁ ସାହିତ୍ୟ ସମାଲୋଚନା ସମୟ, ପରିବେଶ ଓ ପରିସ୍ଥିତିର ଏକ ସ୍ୱାଭାବିକ ପରିଣତି । ଏ କ୍ଷେତ୍ରରେ ମୁଁ ଯଥାସମ୍ଭବ ମୋର ଶକ୍ତି ଓ ବିଚାର ବୁଦ୍ଧି ବିନିଯୋଗ କରିଅଛି । ଆହରଣ ଓ ସଜ୍ଜୀକରଣରେ ହିଁ ମୋର ଶକ୍ତି ବିଶେଷଭାବେ ନିୟୋଜିତ । କାଳର କଷଟିରେ ଏଗୁଡ଼ିକ ମୂଲ୍ୟସ୍ଥାନ ବିବେଚିତ ହେବା ବିଚିତ୍ର ନୁହେଁ । ବହୁ ଅସୁବିଧା, ଉପେକ୍ଷା, ବିରାଗ ଭୋଗିବାକୁ ପଡ଼ିଥିଲେହେଁ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ମୋର ଉଦ୍ୟମ ଯେ କେତେକଙ୍କ ଅପ୍ରଶଂସ ଦୃଷ୍ଟି ଆକର୍ଷଣ କରିଛି, ସେଥିପାଇଁ ମୁଁ ଆନନ୍ଦିତ । ତଥାପି ମୋର ଅବଶୋଷ, ମୁଁ ସୃଜନଧର୍ମୀ ସାହିତ୍ୟ ରଚନାଠାରୁ କିଞ୍ଚିତ୍ ଦୂରେଇ ଯାଇଛି । ଏବେ ମଧ୍ୟ ମୁଁ ବିଶ୍ୱାସ କରେ ସମାଲୋଚନାଠାରୁ ନୂତନ ସୃଷ୍ଟି ମହତ୍ତର ।

**ଏବଂ ଶେଷରେ :**

ସ୍ରଷ୍ଟାଙ୍କର ଜୀବନାନୁଭୂତିର ଏହି ତୀବ୍ର ଜ୍ୱଳନ ଅନେକଥର ତାଙ୍କ କଥାବାର୍ତ୍ତାରେ ପ୍ରତିଫଳିତ । ସେ କେତେଥର ଏଇ ଲେଖକଙ୍କୁ କହିଛନ୍ତି— 'ତୁମେ ଗବେଷଣା ତ କଲ, ଆଉ କାହିଁକି ସେ ଆଡ଼କୁ ଅଧିକ ମନ ବଳଉଚ । ତୁମ ଚଲାବାଟକୁ ତୁମେ ଫେରିଆସ । କିଛି ଅଧିକ ସୃଜନଧର୍ମୀ ସାହିତ୍ୟ ସୃଷ୍ଟି କରିଯା,—ସେଇଥିରେ ତୁମେ ବଞ୍ଚିବ ।'

ଯେତେଦୂର ମନେହୁଏ, ନିଜ ଜୀବନର ଅବଶୋଷଗୁଡ଼ିକ ସେ ଜଣେ ଦରଦୀ ସ୍ରଷ୍ଟା ଭାବରେ ଅନ୍ୟ ପାଖରେ ଥୋଇ ଦେଉଥିଲେ । କବି ହେବାର ଦୁର୍ବାର ବାସନା ତାଙ୍କର ବାରମ୍ବାର ପ୍ରତିହତ ହୋଇଛି ଏହି ସମାଲୋଚନା ଧାରା ପାଖରେ । ସେ ସମାଲୋଚନାର ଜଗତରୁ ଓହରି ଯାଇପାରି ନାହାନ୍ତି; କିମ୍ବା କବିତା ପ୍ରତି ଯଥାର୍ଥରେ ସମୟ ଦେଇପାରି ନାହାନ୍ତି । ଆମ ଭାଷା-ସାହିତ୍ୟର ଜଙ୍ଗଲ-ପଥକୁ ପରିଷ୍କାର କରୁ କରୁ ସେ ଆସି ଜୀବନର ଅପରାହ୍ଣରେ ଉପନୀତ ।

ଈଶ୍ୱର ତାଙ୍କୁ ସମୟ ଓ ସୁଯୋଗ ଦିଅନ୍ତୁ—ସେ ତାଙ୍କର ଇଚ୍ଛା ପୂରଣ କରିଯାଆନ୍ତୁ । ଓଡ଼ିଆ କାବ୍ୟ-କାନନ ତାଙ୍କର ଅନୁଭୂତିର ରଙ୍ଗରେ 'ବିଚିତ୍ରବର୍ଣ୍ଣା' ହେଉ ।

ସଙ୍ଗୀତ ଭୀଷ୍ମ—

# ଶ୍ରୀ ନୃସିଂହନାଥ ଖୁଣ୍ଟିଆ

**ଶ୍ରୀ କୃଷ୍ଣଚନ୍ଦ୍ର ମହାପାତ୍ର**

"ଓଁ ଉଗ୍ରବୀରଂ ମହାବିଷ୍ଣୁଂ ଜ୍ୱଳନ୍ତଂ ସର୍ବତୋମୁଖମ୍
ନୃସିଂହଂ ଭୀଷଣଂ ଭଦ୍ରଂ ମୃତ୍ୟୁମୃତ୍ୟୁଂ ନମାମ୍ୟହମ୍ ॥"

ଶ୍ରୀକ୍ଷେତ୍ରାଧିପ ଶ୍ରୀଜଗନ୍ନାଥଙ୍କର ଶ୍ରୀବିଗ୍ରହର ଏକ ଅବତାରୀ ରୂପ ପ୍ରଭୁ ନୃସିଂହ । ପୁରୀର ଶ୍ରୀମନ୍ଦିର ତଥା ଯୋଗା, ଆଖଡ଼ା, କୋଠ, ଗଡ଼ ସଂସ୍କୃତିର ଧର୍ମ ପରିସରରେ ଶ୍ରୀନୃସିଂହ ବିଗ୍ରହ-ପୂଜା, ଆରାଧନା ଏକ ପରମ୍ପରା ।

## ଅଥ୍ୟମାରମ୍ଭ :

ଖ୍ରୀ: ୧୫୧୦ରେ ଶ୍ରୀଚୈତନ୍ୟ ଦେବଙ୍କର ଶ୍ରୀମନ୍ଦିରରେ ଧର୍ମପ୍ରସିଦ୍ଧ 'କଳ୍ପବଟ' ମୂଳରେ ଅତିବଡ଼ୀ ଜଗନ୍ନାଥ ଦାସଙ୍କ ସହ ଧାର୍ମିକ, ମର୍ମିକ ଆତ୍ମାର ମହାମିଳନର ମହାକାଳ (ସମୟ)ର ଋଷିପ୍ରତିମ ପୁରୁଷ କାହ୍ନାଇ ଖୁଣ୍ଟିଆ ଓରଫ କାନାଇ ଖୁଣ୍ଟିଆଙ୍କ ବଂଶଧରର ଦାୟାଦ ଗୋବିନ୍ଦଚନ୍ଦ୍ର ଖୁଣ୍ଟିଆଙ୍କ ଗୃହାଙ୍ଗନ ମୁଖରିତ ହୋଇ ଉଠିଲା ୭ । ୪ । ୧୯୧୧ରେ ଏକ ମଧୁମଙ୍ଗଳ ହବ୍ୟଧ୍ୱନିରେ । ନୃସିଂହନାଥଙ୍କର ଅପାର କରୁଣାରୁ ଜନ୍ମିତ ଶିଶୁପୁତ୍ରର ନାମକରଣ କରାଗଲା 'ନୃସିଂହନାଥ' ଏବଂ ଡାକନାମ ହେଲା "ନାଥ" । ଏବେବି ଗୁରୁ, ଶୁଭେଚ୍ଛୁବୀ, ସାଇଭାଇ, ବନ୍ଧୁବାନ୍ଧବ, ଜ୍ଞାତିକୁଟୁମ୍ବ ମହଲରେ ନାଥ, ନାଥ'ନା, ନାଥ ଖୁଣ୍ଟିଏ (ଆ), ନାଥସାର୍

ହୋଇ ବର୍ଦ୍ଧିତ, କଥିତ । ପିତା ଗୋବିନ୍ଦଚନ୍ଦ୍ର ଓ ମାତା ପଦ୍ମାବତୀଙ୍କ ଏକମାତ୍ର କୁଳଚନ୍ଦ୍ରମା 'ନାଥ' ଗେଲବସର ହୋଇ ବଢ଼ିବାକୁ ଲାଗିଲେ ।

## ବାଲ୍ୟ ପରିଚିତି :

ବାସଗୃହ ଥିଲା ପୁରୀର ଖୁଣ୍ଟିଆ ସାହିରେ, ଯେଉଁଠି ଶ୍ରୀମନ୍ଦିର ସେବାୟତ ଖୁଣ୍ଟିଆ ଶିବିର ଅବସ୍ଥିତ । ମାଠିବଂଶ ଅବଧାନଙ୍କ ତତ୍ତ୍ୱାବଧାନରେ ନୃସିଂହ କଲେ ପ୍ରାରମ୍ଭିକ ବିଦ୍ୟାଶିକ୍ଷା ଚାଟଶାଳୀରେ । ଅଣ୍ଟାରେ ପିନ୍ଧିଥାଏ 'ଡୋର' ଓ ପରିଧାନ ଏକ କୌପୀନ (କୌପୁନୀ), ସୁନ୍ଦର ଚେହେରା, ମୁଣ୍ଡରେ ଘନକୃଷ୍ଣ କେଶର ଗଣ୍ଡି, ମଥାରେ ଗୋରଚନା କଳା ଟିପା; ହାତରେ ସିଲଟ୍ ଓ ମୁଣ୍ଡା ଖଡ଼ି । ଗୁହାଳୀ ପିଣ୍ଡା ବାଟରେ ନାଥ ସମ୍ପ୍ରଦାୟର ଯୋଗୀର ଗୀତ, ଜେନ୍ଦରା ଶବ୍ଦ ଶୁଣି କାନଡେରି ଠିଆ ହୋଇଯା'ନ୍ତି ସେ । ଆଠଟି ଦଶକ ତଳର କୌପୀନଧାରୀ ନାଥ ଆଜି ଅଶୀତିତମ ବର୍ଷରେ ପଦାର୍ପଣ କରିଥିବା ନୃସିଂହନାଥ ।

## କୌପୀନରୁ କଳା ଚର୍ଚ୍ଚା :

"କାଳୋହ୍ୟୟଂ ନିରବଧି ବିପୁଳା ଚ ପୃଥ୍ୱୀ ।"

ଏହି ବିଶାଳ ପୃଥିବୀରେ କାଳହିଁ କେବଳ ନିତ୍ୟ, ସତ୍ୟ, ଶାଶ୍ୱତ । କାଳର କରାଳ କବଳରେ କବଳିତା ହେଲେ ନୃସିଂହଙ୍କ ମାତୃଦେବୀ ପଦ୍ମାବତୀ । ନାଥ ମା'ଛେଉଣ୍ଡ ହୋଇଗଲେ ମାତ୍ର ୬ ବର୍ଷ ବୟସରେ । ମା' ନାମ ମହିମାର ମୂର୍ତ୍ତିମନ୍ତ ପ୍ରତୀକ ଆଈ (ମାତାମହୀ) ପାର୍ବତୀ ଦେବୀଙ୍କ କୋଳମଣ୍ଡନ କଲେ ନାଥ । ଅଜାଙ୍କ ନାମ ଥିଲା ସାଗର ଲୋକନାଥ ପ୍ରତିହାରୀ । ଶ୍ରୀଜଗନ୍ନାଥଙ୍କ ସେବାୟତ ସମ୍ପ୍ରଦାୟରେ ହଜୁରୀ, ତଳୁଚ, ସିଂହାରୀ, କଳିଯୁଗ, ସାମନ୍ତ ଉପସଜ୍ଞା (Sub-Title) ପରି 'ସାଗର' ଅନ୍ୟତମ । ସାଗର ସ୍ନାନ (ଗଙ୍ଗାସାଗର ମେଳା)ର ତୀର୍ଥଯାତ୍ରୀଙ୍କ ତୀର୍ଥପଣ୍ଡା ଭାବେ ଖ୍ୟାତ ସାଗର ପ୍ରତିହାରୀ ବା ସାଗର ପଡ଼ିଆରୀ । ଅଜାଙ୍କର ସାଗର-ଗଭୀର ଧନର ପ୍ରାଚୁର୍ଯ୍ୟ ଓ ଆଈଙ୍କର ସ୍ନେହ, ବାତ୍ସଲ୍ୟ ମମତାସିକ୍ତ ଯତ୍ନରେ ପରିପାଳିତ ହୋଇ ୧୬ ବର୍ଷ ବୟସରେ ଦାର୍ପଣ କରନ୍ତେ ପିତୃହୀନ ହୋଇ ପଡ଼ିଲେ 'ନାଥ' ।

ବାଲ୍ୟକାଳରୁ ଅଜା ଆଣ୍ଙ୍କୁ 'ବାବା' 'ମାଆ' ଭାବେ ଆଦର କଲେ । ଶୁଣ୍ଢାଳୀରେ ନାଥ ଗୀତଟିଏ ବୋଲୁଥିଲେ—

"କୃଷ୍ଣର ଗମନ ଦେଖି ଛନଛନ୍ନ ହୋଇ ସକଳ ଗୋପାଙ୍ଗନା
ଗୁରୁ ଗଉରବ ବାରି ନ ପାରନ୍ତି ଅରତ ଶରଙ୍ଗ ନୟନା"......

'ମଥୁରା ମଙ୍ଗଳ'ର ଏହି ଗୀତ-ଶୁନ୍ଦର ଛନ୍ଦରେ ଅନୁବନ୍ଧିତ ହୋଇଗଲା 'ନାଥ'ଙ୍କର ବାଲ୍ୟଚପଳ ଛନ୍ଦର ଅପୂର୍ବ ଲଳିତ୍ୟ । ଶୁଣ୍ଢାଳୀର ଶୁଳଘର ମଧ୍ୟରୁ ଭାସି ଆସୁଥିଲା ଚପଳ-ଶିଶୁର ସରଳ ତରଳ ସ୍ୱରର ମଧୁର ମୂର୍ଚ୍ଛନା । ଚକିତ ହୋଇ ଶୁଣୁଁ ରହୁଥିଲେ ସେତେବେଳର ସଙ୍ଗୀତଜ୍ଞ ଭିଖାରୀ ବଳେଇ, ସିଂହାରୀ ଶ୍ୟାମସୁନ୍ଦର କରଙ୍କ ପିତା ।

ଅଜା ଜଣେ ଭଲ ପଖଉଜିଆ । ଧ୍ରୁପଦ ରାଗରେ ଗାଇବା, ବାଇବାରେ ସେ ଥିଲେ ଜଣେ ସିଦ୍ଧସାଧକ । ସାନମାମୁଁ ସଙ୍ଗୀରା ପ୍ରତିହାରୀ (ଭୀମସେନ) ସଙ୍ଗୀତ ରାଜମନ୍ତ୍ରରେ ଦୀକ୍ଷିତ ହୋଇଥିଲେ । ବାଦ୍ୟ-ଯନ୍ତ୍ରରେ ତାଙ୍କର ପାରଙ୍ଗମତା ଉଲ୍ଲେଖଯୋଗ୍ୟ । ପଖାଉଜ, ତବଲା, ହାରମୋନିୟମ୍, କ୍ଲାରିଓନେଟ୍, ସିତାର, ଏସ୍‌ରାଜ୍, ବେହେଲା—ଏହି ସପ୍ତବାଦ୍ୟଯନ୍ତ୍ର ବାଦନ ସହିତ ଓଡ଼ିଶୀ ସଙ୍ଗୀତ ଗାୟନର ସାଂଗୀତିକ ପୃଷ୍ଠଭୂମି ସଙ୍ଗୀତଗୁରୁ ନୃସିଂହନାଥ ଖୁଣ୍ଟିଆଙ୍କ ବାଣୀସାଧନାରେ ଜଣେ କୃତୀ ସାଧକର ଗୁରୁଗୌରବ ଅର୍ଜନ କରିବାର କାରଣ ଅଟେ, ଏଥିରେ ଲେଶ ମାତ୍ର ସନ୍ଦେହ ନାହିଁ ।

ପୁରୀ ସହରର 'କାଳିକାକୋଠ' ପ୍ରଥମ ସଙ୍ଗୀତ-ଅନୁଷ୍ଠାନ କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଶୀ-ସଙ୍ଗୀତର ମୂର୍ଦ୍ଧନ୍ୟ ଗୁରୁ, ପ୍ରାଣ ପ୍ରତିଷ୍ଠାତା ଦେଶରାଜା ସିଂହାରୀ ଶ୍ୟାମସୁନ୍ଦର କର ଓ ମାମୁଁ ସଙ୍ଗୀତଜ୍ଞ ସଙ୍ଗୀରା ପ୍ରତିହାରୀ ନୃସିଂହଙ୍କର କଣ୍ଠରେ ନାଦବ୍ରହ୍ମଙ୍କର ଦୃଢ଼ସତ୍ତା ଉପଲବ୍ଧି କରି ତାଙ୍କୁ ସଙ୍ଗୀତାଭିମୁଖୀ କରିବାର ପ୍ରୟାସ କଲେ ।

## ଶିକ୍ଷା ଓ ଦୀକ୍ଷା :

ହିନ୍ଦୁସ୍ଥାନୀ ଧାରାଙ୍କର ପଣ୍ଡିତ ଭାବରେ ହିନ୍ଦୁସ୍ଥାନୀ ସଙ୍ଗୀତଜ୍ଞଙ୍କ ଭାଷାକୁ ରୂପାୟିତ କଲେ ମାମୁଁ ନୃସିଂହନାଥଙ୍କଠାରେ । ଯଥା—

"ଗୁରୁ ପରବାର୍ଥ ଦେତାହେ ନାଦବ୍ରହ୍ମ ସୁଖଦାନ
ପଶୁ ଶିଶୁ ମୃଗଜୀବ ଜନ୍ତୁ ବଶ ଥାଳେ ସଦା ପ୍ରମାନ ।"

ତାତ୍କାଳିକ ଭାରତର ଇଂରେଜ ଶାସକ ସପ୍ତମ ଏଡ୍‌ଓ୍ୱାର୍ଡ (Edward VII) ଙ୍କର ସ୍ଥାପିତ ପୁରୀର ବିଖ୍ୟାତ ଶିକ୍ଷାନୁଷ୍ଠାନ ଏଡ୍‌ଓ୍ୱାର୍ଡ ଏମ୍. ଇ. ସ୍କୁଲ (ବର୍ତ୍ତମାନର ଲୋକନାଥ ମାର୍କେଟ ସ୍ଥିତ ଗଦାଧର ଉଚ୍ଚ ବିଦ୍ୟାଳୟ)ରେ ନୃସିଂହଙ୍କର ୭ମ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷାର ଇତିଶ୍ରୀ ହୋଇ ଏବଂ ସଙ୍ଗୀତରେ ବିଶ୍ୱବିଦ୍ୟାଳୟସ୍ତରୀୟ ମହାନ୍ ସ୍ରୋତର ଅନୁଗାମୀ ହେଲି ।

ହରଚଣ୍ଡୀ ସାହିର ଗମ୍ଭୁଣ୍ଡାଙ୍କ ମନ୍ଦିର ସମ୍ମୁଖରେ ମାମୁଁଘର । ଗମ୍ଭୁଣ୍ଡାଙ୍କ ମନ୍ଦିରକର ସଙ୍ଗୀତ ଆସର ଜମି ଉଠିଲା । ଅଜା, ମାମୁଁ, ସିଂହାରୀ ଶ୍ୟାମସୁନ୍ଦର କର ପ୍ରମୁଖ ସଙ୍ଗୀତଜ୍ଞଙ୍କ ଉପସ୍ଥିତିରେ ନୃସିଂହ ଆରମ୍ଭ କଲେ ସେହି ପୁରାତନ ଗୀତ 'କୃଷ୍ଣର ଗମନ ଦେଖି ଛନ୍ନ ଛନ୍ନ…" କ୍ରମଶଃ ସଙ୍ଗୀତ ଶିକ୍ଷାର ଏକ ବାଧ୍ୟବାଧ କ୍ରମରେ ଅଭ୍ୟାସରତ ହେଲେ 'ନାଥ' । ଓଡ଼ିଶାର ଷୋଡ଼ଶରେ ସଂସ୍କୃତି ତଥା ଧର୍ମୀୟ ଆନ୍ଦୋଳନର ଜଣେ ହିତକାରୀ ସୃଷ୍ଟିକାରୀ ପ୍ରଭୁପାଦ ମୋହନ ସୁନ୍ଦର ଦେବଗୋସ୍ୱାମୀ (ମୋହନ ଗୋସେଇଁ)ଙ୍କର ଭ୍ରାତା ଗୋପାଳ ଗୋସ୍ୱାମୀ ଓ ସଙ୍ଗୀତଜ୍ଞ ବିଶ୍ୱରୂପ ଗୋସ୍ୱାମୀ ଯଥାକ୍ରମେ କ୍ଲାରିଓନେଟ୍ ବଜାନ୍ତି ଓ କୀର୍ତ୍ତନ ଶିଖାନ୍ତି ।

**ସଙ୍ଗୀତର ମୂର୍ଚ୍ଛନା :**

ସାକ୍ଷାତକାର କ୍ରମରେ ୭୯ ବର୍ଷ ବୟସ୍କ ନୃସିଂହନାଥ ଖୁଣ୍ଟିଆଙ୍କ କଣ୍ଠରୁ ଝଂକୃତ ହେଲା ଉତ୍କଳୀୟ ତଥା ବଙ୍ଗୀୟ ଗୌଡ଼ୀୟ କୃଷ୍ଣକୈନ୍ଦ୍ରିକ ନବଦ୍ୱୀପ କୀର୍ତ୍ତନର ଝଲକ—

"ଏସୋ ନବଦ୍ୱୀପେର ଗୌର ହରହେ କାହ୍ନା ପାର କର
ଗୌରାଙ୍ଗ ଆମାୟ ସଂସାର ମାଝାୟ,
ପାରକରେ ପ୍ରଭୋ ପାର କରୋ"—

ଏବେ ବି ମଧୁ ସ୍ୱର, ତାଳ, ମାନ, ଲୟର ଅପୂର୍ବ ଅପରିବର୍ତ୍ତନୀୟ ସାମଞ୍ଜସ୍ୟ ଲକ୍ଷ୍ୟ କଲି ତାଙ୍କ ଗାୟନ ଶୈଳୀରେ । ଚକ୍ଷୁ ତାଙ୍କର ଶ୍ରୀକୃଷ୍ଣ ଭକ୍ତିରସରେ ଲୋତକାପ୍ଲୁତ, କଣ୍ଠ ବାଷ୍ପାକୁଳ, ଶରୀର ରୋମାଞ୍ଚିତ, ବେପଥୁ ।

ମୁଁ ଆତ୍ମବିସ୍ମୃତ ହୋଇ ଶୁଣୁଥିଲି ଏବଂ ପାନ କରୁଥାଏ ଶ୍ରୀକୃଷ୍ଣ ଗୁଣକୀର୍ତ୍ତନର ସେହି ଅମୀୟ ସୁଧାଧାରକୁ, କୃତାର୍ଥ ହେଲା ମୋର ଏ ଜୀବନ । ମୋର କ୍ଷୁଦ୍ରାତିକ୍ଷୁଦ୍ର ସାଙ୍ଗୀତିକ ଅନୁଭୂତିରେ ମୁଁ ଉପଲବ୍ଧି କଲି—

"ନାଦେନ ବ୍ୟଜ୍ୟତେ ବର୍ଣ୍ଣଃ ପଦଂ ବର୍ଣ୍ଣାତ୍ ପଦାଦ୍ ବଚଃ
ବଚସୋ ବ୍ୟବହାରୋଽୟଂ ନାଦାଧୀନମତୋ ଜଗତ୍ ॥"

## ସାଙ୍ଗୀତିକ ଜୀବନ ପ୍ରବାହ :

ଗୁରୁ ନୃସିଂହନାଥ କହୁଥିଲେ ତାଙ୍କର ଜୀବନର ସଙ୍ଗୀତ ପର୍ଯ୍ୟାୟର ଛନ୍ଦୋବଦ୍ଧ ଗୀତିମୟ ସଲାପ, ଆଳାପ, ତଥା କଲକଲାପ ; ସିଂହାରୀ, ମାମୁଁ ଫକୀର ପଡ଼ିହାରୀ ଓ ଦାସନନ୍ଦାପାତ୍ର ତଥା ଭିକାରୀ ଦଳେଇଙ୍କ ପଖାଉଜ, ମୃଦଙ୍ଗବାଦନ ଏବଂ ସାଧୁ ମଥାନ, ନରସିଂହ ଅଧିକାରୀଙ୍କ ସୁଲଳିତ କୀର୍ତ୍ତନ, ଭଜନ, ଜଣାଣରେ ସଙ୍ଗୀତ ନୃତ୍ୟ ବାଦ୍ୟ ବିଶାରଦା ମା ଶାରଦା ଗୁମୁଣ୍ଡାଙ୍କ ମନ୍ଦିରନାଦିତ, ମୁଖରିତ ଓ ଭକ୍ତି-ପ୍ଲାବିତ ହେଲା । 'ନାଥ ଖୁଣ୍ଟିଆ'ଙ୍କ ସଙ୍ଗୀତ ଜୀବନର ଦୃଢ଼ ଭିତ୍ତି-ପ୍ରସ୍ତରର ଶିଳାନ୍ୟାସ ତଥା ସଙ୍ଗୀତସୌଧ ନିର୍ମାଣର ପ୍ରାକ୍‌ପ୍ରସ୍ତୁତି ଆଣିଦେଲା ଦୃଢ଼ ମନୋବଳ । ବାରବାଟୀ ସାଗର ଇଷ୍ଟଦେବତା 'ନୃସିଂହ'ଙ୍କ ଚକଡ଼ା ତଥା ଜଗମୋହନରେ ଏକ କୀର୍ତ୍ତନମଣ୍ଡଳୀ ସଙ୍ଗଠିତ ହେଲା । ଗୁରୁ ନାଥ ଖୁଣ୍ଟିଆ, ବୟୋବୃଦ୍ଧ ଚନ୍ଦ୍ରାମଣି ମିଶ୍ର ଓ ହରିହର ବାୟଗୁରୁଙ୍କଠାରୁ କୀର୍ତ୍ତନ ଏବଂ ବଡ଼ପଣ୍ଡା ଦାମା ହରିହର ଗୁରୁଙ୍କ ଦାୟାଦ ଦ୍ୱାରିକାନାଥ ଗୁରୁଙ୍କଠାରୁ ଓଡ଼ିଶୀ, ଧ୍ରୁପଦ ଶିକ୍ଷାଲାଭ କଲେ । କଲିକତାର ସଙ୍ଗୀତଜ୍ଞ ବୈଷ୍ଣବ ଦାସ ଓ ବିଭୂତିଭୂଷଣ ମୁଖୋପାଧ୍ୟାୟଙ୍କ ୮ମାସ ରହଣିକାଳ ମଧ୍ୟରେ ବ୍ରଜନାଥ ଗୁରୁ ସିତାର, ସିଂହାରୀ ଓ ନାଥ ଧ୍ରୁପଦ, ଧମାର ଶିଖିଲେ ।

ସଙ୍ଗୀତ ଜୀବନରେ ଏକ କୌତୁହଳପୂର୍ଣ୍ଣ ଘଟଣା ଏଠାରେ ଉଲ୍ଲେଖ ନ କଲେ ଅପୂର୍ଣ୍ଣ ରହିଯିବ । ୧୯୩୪ ମସିହା କଟକ ତେଲ ତେଲିଙ୍ଗା ବଜାରଠାରେ ଅନୁଷ୍ଠିତ ସଙ୍ଗୀତ ପ୍ରତିଯୋଗିତାର ସଜ୍ଜିତ ମଞ୍ଚ । ଯୁବକ ନୃସିଂହନାଥ ଖୁଣ୍ଟିଆ ଗୀତ ବୋଲିଲେ-ଧ୍ରୁପଦ । ଉଚ୍ଛ୍ୱସିତ

କରତାଳିକୁ ଏକ ବିକଳ୍ପ ପ୍ରଶଂସା ବୋଲି ଭାବି ମଞ୍ଚ ଉପରୁ ଧାବମାନ ହେଲେ ବାହାରକୁ ନୃସିଂହନାଥ । ଦର୍ଶକମଣ୍ଡଳୀ କରତାଳି ତ୍ୟାଗ କରି ଉଚ୍ଚସ୍ୱରରେ ଡାକିବାକୁ ଲାଗିଲେ ।

ତା'ପରେ ପୁରୀଘାଟଠାରେ ରଙ୍ଗଲାଲ ମୋଦିଙ୍କ ଘର ପାଖରେ ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ-ଆନୁଷ୍ଠାନିକ ଅନୁଷ୍ଠାନ । ଲକ୍ଷ୍ମୀକାନ୍ତ ଚୌଧୁରୀ-ସମ୍ପାଦକ, ବାଞ୍ଛାନିଧି ମହାପାତ୍ର-ସଭାପତି । କେନ୍ଦ୍ରାପଡ଼ାର ଗୋକୁଳବିହାରୀ ଶ୍ରୀଚନ୍ଦନ ଥିଲେ ଅଧ୍ୟକ୍ଷ । ସେ ନାଥଙ୍କୁ ଧର୍ମପୁଅ କରିଥିଲେ । ତାଙ୍କ ସ୍ୱପୁତ୍ର ବିନୋଦବିହାରୀ ଶ୍ରୀଚନ୍ଦନ ତବଲା ସଙ୍ଗତ କରନ୍ତି । ନାଥ ୩୪ ମାସ ରହି ଶାସ୍ତ୍ରୀୟ ସଙ୍ଗୀତ (Classical) ଶିଖିଲେ । ସେତେବେଳେ ସଙ୍ଗୀତ ସୁଧାକର ବାଳକୃଷ୍ଣ ଦାସ ୧୨ ବର୍ଷ ବୟସର ପିଲା, ସଙ୍ଗୀତ ଶିଖୁଥାନ୍ତି । ନନ୍ଦନିଧି ଧଳସାମନ୍ତ, ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ, ଶ୍ୟାମସୁନ୍ଦର ଧୀରଙ୍କ ସହ ନୃସିଂହନାଥ ପରିଚିତ ପରିସର, ସଙ୍ଗୀତ ଆସର, ପ୍ରତିଯୋଗିତା ମାଧ୍ୟମରେ ସାମିଲ ହେବାର ସୁଯୋଗ ପ୍ରଣିଧାନଯୋଗ୍ୟ । ଧ୍ରୁପଦ, ଖେୟାଲ, ଗଜଲ, ଠୁମୁରୀ, ଓଡ଼ିଶୀ, ଛାନ୍ଦ, ଭଜନ, ଚମ୍ପୂ, ଜଣାଣ ପ୍ରଭୃତିରେ ବିଷୟଗତ କୃତିତ୍ୱ ଅର୍ଜନ କରି ୧୯୩୭ ମସିହାରେ ସେ ଧ୍ରୁପଦ ଚମ୍ପିୟାନ ହେଲେ । ପ୍ରତିଯୋଗିତାରେ ଥରେ ଖେୟାଲ ଛାଡ଼ିଦେଇଥିଲେ ବୋଲି 'ସିଂହାରୀ' ରାଗିଲେ । ପ୍ରତି ଉତ୍ତରରେ କହିଲେ ଗୀତ ଗାଇବାରେ ଅଙ୍ଗମାନ ଲକ୍ଷ୍ୟ କରିବାର କଥା । ସେଗୁଡ଼ିକ ହେଲା ଭାବ, ରସ, ତାଳ ଓ ଲୟ । ଗାୟକର ଯଦି ଗୋଟିଏ ଅଭାବ ହୁଏ ବା ଊଣା ହୁଏ ତେବେ ଗାୟନଶୈଳୀ ଲକ୍ଷଣାଯୁକ୍ତ ନ ହୋଇ ବିଲକ୍ଷିତ ହୋଇଯାଏ ।

ଏହି ପରିପ୍ରେକ୍ଷୀରେ ନାଥ ସାରଙ୍କୁ ପଚାରିଲି, "ସାର, ଜଣେ ଭଲ ସଙ୍ଗୀତଜ୍ଞ ଗୀତ ଗାଉଥିବା ସମୟରେ ଦର୍ଶକ ତଥା ଶ୍ରୋତା କାହିଁକି ବିରକ୍ତି ଭାବ ପ୍ରକାଶ କରନ୍ତି" ? ଦୀର୍ଘ ଅନୁଭୂତିସମ୍ପନ୍ନ ତଥା ଜ୍ଞାନ-ଗର୍ଭ ଶ୍ରୀଯୁକ୍ତ ଖୁଣ୍ଟିଆ ବୁଝାଇଲେ—

ବୁଝିଲ କୃଷ୍ଣ, ଖାଲି ସଙ୍ଗୀତ ଶିଖିଲେ ହେବନାହିଁ କି ଗୀତ ବୋଲିଦେଲେ ହେବ ନାହିଁ । 'ହୃଦୟ ଉଦାର, କଣ୍ଠ ମୁଦାର ଏବଂ ଶରୀର

ତାଙ୍କ ଏଗୁଡ଼ିକ ପ୍ରତି ଲକ୍ଷ୍ୟ କରିବା ନିତାନ୍ତ ଆବଶ୍ୟକ । ଉଦାରହୃଦୟ ଓ ଶରୀର ଶକ୍ତିସମ୍ପନ୍ନ ହୋଇଥିଲେ ଶ୍ରୁତିମଧୁର ସଙ୍ଗୀତ ସୃଷ୍ଟି ହୋଇପାରିବ । ଏଥିରୁ ଗାୟକର ଲକ୍ଷଣିକ ସଙ୍ଗୀତ ସାଧନା ଜଣାପଡ଼େ ।

**କାବ୍ୟେଷୁ ନାଟକଂ ରମ୍ୟଂ :**

ସଙ୍ଗୀତ ବ୍ୟତୀତ ନାଟକ ଦେଖିବା ଓ ଅଂଶଗ୍ରହଣ କରିବା ଗୁରୁ ନୃସିଂହଙ୍କର ଏକ ଅଭ୍ୟାସ ଥିଲା । ମୋହନ ଗୋସାଇଁଙ୍କ କୀର୍ତ୍ତନମଣ୍ଡଳୀରେ ରାସରସିକ ଶେଖର ରସରାଜ ଶ୍ରୀକୃଷ୍ଣ-ରାସ ପରିବେଷଣରୁ ଠାଣି, ମାଣି, ଭାବ, ଭକ୍ତି, ରାଗ, ବିରାଗ, ଅନୁରାଗ, ଅଭିବ୍ୟକ୍ତି ପ୍ରଭୃତି ନୃତ୍ୟ ଓ ଅଭିନୟ ସମ୍ବନ୍ଧୀୟ ବିବିଧ ଗୁଣ ଅର୍ଜନ କରିଥିବାରୁ ନାଟକ କ୍ଷେତ୍ରରେ ସେ ଜଣେ ସଫଳ କଳାକାର ହୋଇପାରିଥିଲେ ।

୧୯୩୦ ମସିହା ଚନ୍ଦନ ହଜୁରୀ ଓରଫ୍ ଗୃହି ଖୁଣ୍ଟିଆଙ୍କ ପ୍ରପୌତ୍ର ହଜୁରୀ ବଳଭଦ୍ର ଖୁଣ୍ଟିଆ 'ହଜୁରୀ ପେଣ୍ଡାଲ୍' (Hazuri Pendal) ନାମକ ଏକ ଥିଏଟର ସଂସ୍ଥା ଗଢ଼ିଲେ । ନାମଜାଦା କଳାକାର ତଥା ସଙ୍ଗୀତ ଓ ବାଦ୍ୟଯନ୍ତ୍ରୀଙ୍କ ସହଯୋଗିତା ଓ ଏକପ୍ରାଣତାରେ ଏହି ନାଟ୍ୟ ସଂସ୍ଥା ଏକ ଅଦ୍ୱିତୀୟ ସ୍ଥାନ ଅଧିକାର କଲା । ମଣିଶଙ୍କର ଧୀରଜରାମ ନାମକ ଜନୈକ ଗୁଜୁରାଟୀ ଗାୟକ ବାଦକ ଏହି Pendal ରେ ହାର୍ମୋନିୟମ ବାଦନ କରି ଦର୍ଶକମଣ୍ଡଳୀଙ୍କୁ ଚମତ୍କୃତ କରିଦେଇଥିଲେ ।

ତାଙ୍କଠାରୁ 'ଟପା' ଶିଖିଲେ ନାଥ । ସେକାଳ ପଖାଳ ଭରି ସୁଆଦ । କର୍ଣ୍ଣାର୍ଜ୍ଜୁନ ନାଟକ ହଜୁରୀ ପେଣ୍ଡାଲ୍‌ରେ ଅଭିନୀତ ହେଉଥାଏ ବାରହୀ ଲାଇବ୍ରେରୀ ସାହାଯ୍ୟାର୍ଥେ । ଓଡ଼ିଶାର ପ୍ରଖ୍ୟାତ ଅଭିନେତା ତଥା ନାଟ୍ୟନିର୍ଦ୍ଦେଶକ ବଲାଇ ବାନାର୍ଜୀ ନିଜେ ଶକୁନି ଭୂମିକାରେ ଅବତୀର୍ଣ୍ଣ । ବଳିଷ୍ଠ ନିର୍ଦ୍ଦେଶକ, କଳାକାର, ଗଦାଧର ଉଚ୍ଚ ବିଦ୍ୟାଳୟ, ପୁରୀର ବର୍ତ୍ତମାନର ଅବସରପ୍ରାପ୍ତ ପ୍ରଧାନଶିକ୍ଷକ ତଥା ଶ୍ରୀମନ୍ଦିର ସେବାୟତ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ପ୍ରତିହାରୀ ହୋଇଥାନ୍ତି କର୍ଣ୍ଣ । ପୁରୀ, କଟକର କଳାପ୍ରେମୀ ଦର୍ଶକମଣ୍ଡଳୀ ତଥା ବଙ୍ଗୀୟ ଯାତ୍ରୀମାନେ ଖୁବ୍ ଭିଡ଼ ଜମାଇଥାନ୍ତି । ସେ କାଳରେ ଟ ୨୮୦୦ ଙ୍କାର ଟିକେଟ ବିକ୍ରୟ ହୋଇଥିଲା । ସେକାଳ ପଖାଳକୁ ଏକାଳରେ ବିରିୟାନୀ, ଶିକେନ୍‌ରେ ହିସାବ କରିପାରୁଥିବେ

କଳାପ୍ରେମୀ ପାଠକବର୍ଗ । ହାଣ୍ଡି ମହାପାତ୍ର ଶିବ, ବଶି ମହାପାତ୍ର-ଭୀମ, ବଳାଇ ଦା-ଶକୁନି, ଡାକ୍ତର ଫକୁବାବୁ-ଅର୍ଜୁନ, ବଳପ୍ରଭହାଗ୍ରି-ଜାମଦଗ୍ନ୍ୟ, ବିପିନଚନ୍ଦ୍ର ବାନାର୍ଜୀ-ଯୁଧିଷ୍ଠିର ହୋଇଥାନ୍ତି । ଆଉ, ନୃସିଂହନାଥ ଖୁଣ୍ଟିଆ ନିୟୁକ୍ତ ଭୂମିକାରେ ପଦାର୍ପଣ କରିଥାନ୍ତି । ରଙ୍ଗ ରୂପ ସଜ୍ଜା କରୁଥାନ୍ତି ଓଡ଼ିଶାର ଖ୍ୟାତନାମା ପ୍ରଥିତଯଶା ରୂପଶିଳ୍ପୀ କୃଷ୍ଣ ମୁଖାର୍ଜୀ ।

ସଙ୍ଗୀତ ନିର୍ଦ୍ଦେଶନା ଓ ବାଦ୍ୟବିଚକ୍ଷଣରେ ହଳନୁଷ୍ଟି ପେଣ୍ଡୋଲର ସ୍ୱତନ୍ତ୍ରତା ଥିଲା । ସମନ ଶନବାଙ୍କ (ବର୍ତ୍ତମାନ ବେହେଲା ବାଦକ ହରନାଥ ଶନବାଙ୍କ ଅଜା) ବେହେଲା, ଯୋଗୀ ନାହାକ (ପଖାଉଜ), ଗଙ୍ଗାଧର ମହାପାତ୍ର (ଲେଖକର ପିତା) ତବଲା, ଭିକାରି ଦଲେଇ, ଗୋପାଳ ଘୋଷ (ହାରମୋନିୟମ) ହଜୁରି ବଳଭଦ୍ର ଖୁଣ୍ଟିଆଙ୍କ (ବଂଶୀ) ବାଦନ ନାଟକକୁ ସର୍ବାଙ୍ଗସୁନ୍ଦର କରିପାରିଥିଲା ।

**ନିୟୁକ୍ତ କେନ ବାଧତେ :**

ଏହାପରେ ସ୍ମୃତିଚାରଣ କ୍ଷମରେ ଗୁରୁ ନୃସିଂହନାଥ ଆତ୍ମସ୍ଥ ହୋଇଉଠିଲେ । ମୁଁ ରସଭଙ୍ଗ କରି ପଚାରିଲି, "ସାର୍, ଏତେ ଭୂମିକା ଥାଉ ଥାଉ ନିୟୁକ୍ତ (ସବୁଠାରୁ କମ୍ ଭୂମିକା) କାହିଁକି ଆଦରି ନେଲେ ?" ଉତ୍ତରରେ ମୁଁ ଶୁଣିଲି—

ଗୋଟାଏ ନିଛକ ମାର୍ମିକ ସତ୍ୟ ଓ ଗୁପ୍ତକଥା ପଚାରିଛ ତୁମେ ! 'ନିୟୁକ୍ତ କେନ ବାଧତେ ।' ନିୟୁକ୍ତିର ନିୟତ ଆଗରେ ରାଜା, ମହାରାଜା, ଦେବ ଦାନବ ସମସ୍ତେ ପରାହତ । ନିୟୁକ୍ତ ବେତାବନୀ ଶୁଣାଏ, ସତ୍ମାର୍ଗ ପ୍ରଦର୍ଶନ କରେ, କଥାବସ୍ତୁର ଗାମ୍ଭୀର୍ଯ୍ୟ ତଥା 'ଅତୀତ, ଭବିଷ୍ୟତ, ବର୍ତ୍ତମାନର ପ୍ରତୀକ ପରି କାର୍ଯ୍ୟ କରିଥାଏ । ନିୟୁକ୍ତକୁ ଲଙ୍ଘନ, ଉପହାସ କଲେ ବିପଦ, ମୃତ୍ୟୁ ଅନିବାର୍ଯ୍ୟ, ଏହାହିଁ ଘଟିଥିଲା । ମୁଁ ଭାବୁଥାଏ 'ଚକୁଳି ଖାଇବା ଲୋକର ବନ୍ଧ ଗଣିବାରେ କି କାର୍ଯ୍ୟ ।" ପୁନଶ୍ଚ ନିୟୁକ୍ତ ନଟନଟୀ, ଉଚରି ପରି କେବଳ ଗୀତ ମାଧ୍ୟମରେ ହିଁ ପ୍ରକାଶ କରିଥାଏ । ତେଣୁ ସୁନ୍ଦର କଣ୍ଠସ୍ୱର ମୋର ଥିବାରୁ ମୁଁ ଏହି ଭୂମିକାଟିକୁ ପସନ୍ଦ କରି ନେଇଥିଲି ।"

ଭାବପ୍ରବଣତାର ଶୀର୍ଷଗାମୀ ହୋଇଥିଲେ ସେ । ପ୍ରଗଳ୍ଭତାର ମହାନ ସ୍ରୋତ ବାଳତରଙ୍ଗ ବନ୍ଧ କ ମାନପାରେ ? କହିଚାଲିଲେ ସେ— 'ପୁରୀ ଜଗନ୍ନାଥ କ୍ଲବ୍‌ରେ ଧ୍ରୁବ ନାଟକ ମଞ୍ଚସ୍ଥ ହେଉଥାଏ । ଗାୟକରନ୍ତି ସିଂହାରୀ ଶ୍ୟାମସୁନ୍ଦର କର, ରଜା ଉତ୍ତାନପାଦ ଏବଂ ମୁଁ ଧ୍ରୁବ । ବଳଭଦ୍ର ମିଶ୍ର ପଣ୍ଡିତଙ୍କ ରଚନା ।' ଏତିକ କହି ସେ ଚମ୍ପିତ ହୋଇଥିବାର ଦେଖି ମୁଁ କହିଲି 'ସେ ନାଟକର ଗୀତ ମନେ ଅଛି କି ?'' ସେ ଆନନ୍ଦିତ ଉଲ୍ଲସିତ ଓ ପୁଲକିତ ହୋଇ ଗାଇଲେ—

ଧ୍ରୁବଗୀତ—

''ଆହେ ନାରାୟଣ ନରକ ଦଳନ ବଇକୁଣ୍ଠ ଧାମ ଶରଣ ନିଧାନ
ଅଶରଣ ଜନ ଏ ଘୋର ବିପିନ ରକ୍ଷାକର ପ୍ରଭୁ ଅନନ୍ତ ଶୟନ ।''

ରଜାଙ୍କ ଗୀତ—

''ଆହାରେ ସଖୀ ସୁମତି,
ସୁରୁଚିଠାରେ ଥିଲି ଏ କି ରତି ।
କିପାଁ ମନ ଅକାରଣ,
ଭୁଲୁ ଏହି ମାୟାବନ ।
ମାୟାଜାଲେ ପଡ଼ି କିପାଁ,
ଛାଡ଼ୁ ସୁଖ ସନ୍ତରଣ ।

ବାର୍ଦ୍ଧକ୍ୟର ବଡ଼ଦାଣ୍ଡରେ ସଙ୍ଗୀତର ବଡ଼ପଣ୍ଡା ନୃସିଂହନାଥ ସୁଦୂର ଅତୀତର ଗୀତ-ରଥ ଟାଣି ଧଇଁ ସଇଁ ହୋଇଗଲେ । କିନ୍ତୁ ସ୍ୱରର ତାରୁଣ୍ୟ ଆଜ ବି ଉଜ୍ଜୀବିତ କରୁଥାଏ ପୂର୍ବ ସ୍ମୃତିକୁ । 'ଗପ ହେଲେବି କଥାଟି ସତ ।'' ''ଘଟଣା ଚରିତ୍ର ଅତି ସାଧାରଣ ।'' ଶ୍ରୀ ଜୀଉଙ୍କ ଅଙ୍ଗିଲି 'ସେବକ ସିଂହାରୀ ଶ୍ୟାମ କର ନାଟକଟିରେ ଅଂଶଗ୍ରହଣ କରିବାରୁ ସେବାୟତ ଗୋଷ୍ଠୀ ତାଙ୍କୁ ବାସନ୍ଦ କରିଥିଲେ । ତେଣୁ ସିଂହାରୀ ଅଭିନୟ ତ୍ୟାଗ କରି କେବଳ ସଙ୍ଗୀତ (ସ୍ୱର ଓ ନାଦ) ସାଧନା-ବ୍ରତୀ ହେଲେ । ମୁଁ ପଚାରି-ଦେଲି 'ଆପଣଙ୍କୁ ତ ସେମିତି ବାସନ୍ଦ କରିଥିବେ ?''

—ନାଁ । ନାଁ । । ଆମର ଥିଲା ପତ୍ରବଡ଼୍ ସେବା । ଶ୍ରୀବିଗ୍ରହଙ୍କ ଶ୍ରୀଗ୍ରୀମୁଖରେ ଭୈରବଙ୍କଚନ୍ଦ ବାହାରେ ଧୂପ ସମୟରେ (ଭୋଗ) ଥାଳି ଖେଚେଡ଼ି ବାଡ଼ିବା ଆମର କାମ । ସୁପକାର ସେବା ସେଉଁଥିରେ କ 'ଶାଢ଼ୀବନ୍ଧା' ନାହିଁ । କେବଳ ପରମ୍ପରା କ୍ରମରେ କରିବାକୁ ହୁଏ । ଦୀର୍ଘ ୧୦ ବର୍ଷ ପର୍ଯ୍ୟନ୍ତ ଛେକ ବୋହୁଛୁ (ଶିକା ବାହୁଙ୍ଗରେ ସିଦ୍ଧ ଅନ୍ନ ବ୍ୟଞ୍ଜନ ରୋଷଘରରୁ ପୋଖରିଆ ଓ ଭୋଗମଣ୍ଡପଠାକୁ) । ଆମେ ୨୫ ଘର ଦୁକୁଳିଆ କାହ୍ନାଇ ଖୁଣ୍ଟିଆଙ୍କ ବଂଶଧର ଥାଉ । ଶାଢ଼ୀବନ୍ଧା ନ ଥିବାରୁ ବାସନ୍ଦ କରିନଥିଲେ ।

୧୯୪୮ ସାଙ୍ଗିଲ ଥିଏଟର ଗଢ଼ିଉଠିଲା ପୁରୀରେ । ସେବାୟତ ଗୋଷ୍ଠୀର ମଉଡ଼ମଣି 'ପଞ୍ଚଯୋଷୀ' ମହାପାତ୍ରଙ୍କ ବାଡ଼ପଛପଟେ ଖୋଲା ପଡ଼ିଆରେ । ବ୍ରାହ୍ମଣ ଓ ସେବାୟତଙ୍କ ମଧ୍ୟରେ ସୁସମ୍ପର୍କ, ପୂଜ୍ୟପୂଜାର ଗୀତ ରଙ୍ଗୀଳ ତଥା ସଂସ୍କାରଗତ ପରିଚର୍ଯ୍ୟା ସ୍ଥାପିତ ହୋଇଥିଲା ସଙ୍ଗୀତ ମାଧ୍ୟମରେ । ଏଥିପାଇଁ ସିଂହାରୀ, ନୃସିଂହନାଥ ଓ ଚନ୍ଦ୍ରାମଣି ମିଶ୍ର, ବିଦ୍ୟା ମିଶ୍ରଙ୍କ ଶ୍ରମ ପ୍ରଣିଧାନଯୋଗ୍ୟ ।

## ତେଲ-ଲୁଣ ସଂସାର ଓ ଖୁଣ୍ଟିଆ :

ନୃସିଂହନାଥ ବର୍ତ୍ତମାନ ଯୌବନର କାଉଁରୀ ପରଶରେ କନ୍ଦର୍ପ ସମ ରୂପବାନ । 'ଘର ସଂସାର'ର ପହିଲ ପାହାଚରେ କନ୍ୟାଦେଖା । ସେବାୟତ ପରମ୍ପରାରେ ବାଲ୍ୟବିବାହ ଗୀତରେ ନିବନ୍ଧ ବା ମାହାର୍ଦ୍ଧ ଚେକାର ପ୍ରାରମ୍ଭିକ କାର୍ଯ୍ୟ ସମାପ୍ତ ହେଲା । ଅନିବାର୍ଯ୍ୟ କାରଣବଶତଃ ଭାବୀ ଶ୍ୱଶୁର କହିଲେ ଯେ ନୃସିଂହ ଘରଜୋଇଁଆ (ଘରଜାମାଇ) ହୋଇ ରହିବାକୁ । ସାଥୀ, ସଙ୍ଗାତ, ବୟୋଜ୍ୟେଷ୍ଠ ବ୍ୟକ୍ତିମାନେ ଯେତେ ବୁଝାଇଲେ —

"ଅସାରେ ଖଳୁ ସଂସାରେ ସାର ଶ୍ୱଶୁର ମନ୍ଦିରମ୍
ହିମାଳୟେ ହର ଶେତେ ହରି ଶେତେ ମହୋଦଧୌ ।।"

ଶଶୁର ଘରଠାରୁ ଆଉ ସୁନ୍ଦର ସାର କେଉଁଠି ଅଛି । ନାଥ, ତୁମେ ଆମ କଥା ମାନ । ହରିହର ତ ପୁଣି ଶ୍ୱଶୁରାଳୟରେ ନିଜର

ଆହ୍ବାନ ମଣ୍ଟଣି କରିଛନ୍ତି । କିନ୍ତୁ ନୃସିଂହନାଥ ନଣ୍ଟୋଡ଼ବନ୍ଧା । ତାଙ୍କ ମତରେ—

"ଏକ କୁତା (କୁକୁର) ଭଉଣୀ ଘରେ ଘଇ
ଏକ କୁତା ଶଶୁର ଘରେ ଜୋଇଁ ॥"

## ସଂସ୍କାରକ ଗୁରୁ :

"ଶିର୍ ଦେବେଙ୍ଗ ମଗର ସାର୍ ନହିଁ ଦେବେଙ୍ଗ"

ହେଲନାହିଁ, ବରପୂଜା କନ୍ୟା ବିବାହ କଲ ଅନ୍ୟ ପାତ୍ରରେ ।

ନୃସିଂହନାଥ ଥିଲେ ଜଣେ ସଂସ୍କାରକ । ସେକାଳରେ ବାଲ୍ୟ-ବିବାହ ବାଧ୍ୟତାମୂଳକ ଥିଲ । ବିଶେଷତଃ ସେବାୟତ ସମ୍ପ୍ରଦାୟରେ । ବାଳାଶ୍ରୀ-ବିଧବା ଏକ ସାମାଜିକ ବ୍ୟାଧି । ସୁନ୍ଦର ରୂପ ଯୌବନ ସମ୍ପନ୍ନା ଧନାଢ଼୍ୟ ବ୍ୟକ୍ତିଙ୍କ କନ୍ୟାର ଜୀବନ ହାହୁତାଶମୟ ହେବାର ଦେଖି ନାଥ ସହି ପାରିଲେ ନାହିଁ । ବିଧବା ବିବାହ ପାଇଁ ଜିଦ୍ ଧରି ବସିଲେ । ଜାତିଗତ ଅନୁମତି ସର୍ବାଦୌ ଅସମ୍ଭବ ଲକ୍ଷ୍ୟ କରି ନୃସିଂହନାଥ ମହାଭାରତୀୟୁଗର ଭୀଷ୍ମ-ଶପଥ ନେଇ ଚିର କୌମାର୍ଯ୍ୟ ବ୍ରତରେ ବ୍ରତୀ ହେଲେ । ଆଜି ୭୯ ବର୍ଷ ବୟସରେ ସେ ଅବିବାହିତ, ଘରସଂସାରୀ ନୁହଁନ୍ତି । ସେ କହନ୍ତି—

ସଙ୍ଗୀତହିଁ ମୋର ଆରାଧ୍ୟ ଦେବୀ, ଜୀବନ ସଙ୍ଗିନୀ, ମାନସ-କନ୍ୟା, ଶାନ୍ତି, ମୁକ୍ତି ପ୍ରଦାୟିକା । ଘର ସଂସାର ଦାର ପରିଗ୍ରହ ଅଳୀକ ।

## ଯାଗା ଆଖଡ଼ାରେ ସାଙ୍ଗ ସହସା :

ପୁରୀର ଯାଗା ଆଖଡ଼ା ସଂସ୍କୃତି ସହ ସାମିଲ ହେବା ଏକ ମଜ୍ଜାଗତ ଗୁଣ । ସାଙ୍ଗ ଭାଙ୍ଗ ସଙ୍ଗୀତ, ଗୋବରାଚଢ଼େଇ ଲଢ଼ାଇବା, ପାରା ଉଡ଼ାଇବା, ସାହିଯାତ୍ରା ମେଳରେ ମେଳିଆ ହେବା ଏବଂ ସର୍ବୋପରି ଯାଗା ଆଖଡ଼ାର ଉନ୍ନତି ସାଧନ ତାଙ୍କର ଲକ୍ଷ୍ୟ ଥିଲ । ଦେଉଳଜା ସିଂହାରୀ ବାରବାଟୀ ଯାଗାର, ଖେଳଯାଗାରେ ମାଟିକୁସ୍ତି କରନ୍ତି । ନାଥଁଦଣ୍ଡ, ବୈଠକ,

ଦୌଡ଼ିବା ପ୍ରଭୃତି ଶରୀରଚର୍ଚ୍ଚା କରନ୍ତି । ନିଜ ଉଦ୍ୟମରେ ଡିସ୍ପେନ୍ସାରୀ ନିର୍ମାଣ ଓ ଉନ୍ନତ କରିଛନ୍ତି ତାଙ୍କର ସାଙ୍ଗଠନିକ କ୍ଷମତାର ପରିଚୟ । ଯାଗୀର ମାଲିକାନା ସତ୍ତ୍ୱ ସମ୍ବନ୍ଧୀୟ ଝାମେଲା ଜରିବଦାରଭାବେ ଓ୍ୱାରିସଦାର ନ ହେବା ପାଇଁ ଯାଗୀ ଦାୟିତ୍ୱ ତ୍ୟାଗ କଲେ ।

ଧନ ସମ୍ପତ୍ତିର ମୋହ ତାଙ୍କୁ ସ୍ପର୍ଶ କରିପାରିନଥିଲା । କୁଜଙ୍ଗ ମହାଲର ଜମିକୁ ବନ୍ଦୀ କରି ଦେଲେ । କାନପୁର ରାଜାଙ୍କ ରକ୍ଷିତା ସ୍ତ୍ରୀର ଚକ୍ରାନ୍ତରୁ ମୁକ୍ତ ହେବା ପାଇଁ ଏବଂ ବାଣୀ ସାଧନା ଅବ୍ୟାହତ ରଖିବା ପାଇଁ କାନପୁର ମହାଲ କାନପୁର ଅଦାଲତରେ ନାଓ୍ୱାରିସୀ ସୂତ୍ରେ ଦେଇଥିଲେ ।

## ସଙ୍ଗୀତ ଆସର ଓ ପରିସର :

"Music is Life" ସଙ୍ଗୀତହିଁ ଜୀବନ । ସଙ୍ଗୀତକୁ ଧ୍ୟେୟ, ପେୟ, ଶ୍ରେୟଭାବେ ଆଦରି ନେଇଥିଲେ ନିଶ୍ଚୟ । ଭୋର ୪ଟାରୁ ଦିନ ୧୦ଟା ପର୍ଯ୍ୟନ୍ତ ରିଆଜ୍ ଅର୍ଥାତ୍ ଅଭ୍ୟାସ । ହାରମୋନିୟମ, ତାନପୁରା; ତବଲା, ସିତାରକୁ ସେ ସଙ୍ଗୀତଯୁଦ୍ଧର ଅସ୍ତ୍ରରୂପେ ଗ୍ରହଣ କରୁଥିଲେ । ପ୍ରଫେସର ଯଶୋବନ୍ତ ମୁଳେ ଜଣେ ଶାସ୍ତ୍ରୀୟ ସଙ୍ଗୀତଜ୍ଞ, ସେ ପୁରୀକୁ ସମୟେ ଆସନ୍ତି ! ତାଙ୍କଠାରୁ ସିଂହାରୀ ଓ ନାଥ ଶାସ୍ତ୍ରୀୟ ସଙ୍ଗୀତ ଶିଖିବାର ସୁଯୋଗ ଲାଭ କରନ୍ତି । ଦୁର୍ଗାମାଧବ ସଙ୍ଗୀତ ମହାବିଦ୍ୟାଳୟରୁ ୧୯୬୧ ମସିହାରେ ସଙ୍ଗୀତ ବିଶାରଦ (B. Mus) ପରୀକ୍ଷାରେ କୃତିତ୍ୱସହ ଉତ୍ତୀର୍ଣ୍ଣ ହେଲେ ।

ସ୍ୱାଧୀନତା ପୂର୍ବରୁ ସଙ୍ଗୀତର ପ୍ରଚାର ପ୍ରସାର ଖୁବ୍ ସୀମିତ ଥିଲା । ସଙ୍ଗୀତ ସୁଧାକର ବାଳକୃଷ୍ଣ ଦାସ କଲିକତାରେ ଥାନ୍ତି, New Theatre ନାମକ ସଂସ୍ଥାରେ । All India Radio, Calcutta ରେ ସଙ୍ଗୀତ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରିବାରେ ଶ୍ରୀଯୁକ୍ତ ଦାସଙ୍କର ଉଦ୍ୟମ, ସାହାଯ୍ୟ ଓ ଆନ୍ତରିକତା ଅବିସ୍ମରଣୀୟ ।

କଲିକତା ଆକାଶବାଣୀରେ ବୋଲିଥିବା ପ୍ରଥମ ଗୀତ ହେଲା, ଶ୍ରୀଜଗନ୍ନାଥଙ୍କ ଚରଣାରବିନ୍ଦରେ ଭକ୍ତର ଭକ୍ତିପୂତ ନିବେଦନ —

"ମହାପ୍ରଭୁ, ସୁଖ ନ ପାଇଲି ଦିନେ
ବେଳକୁ ବେଳ ତ ପ୍ରବଳ ହେଉଛି ବିଜୁଳି ଯେସନେ ଘନେ ।"

ଅନ୍ୟ ଏକ ଭଜନ ହେଲା—

"ଭୁଜତଳେ ମୋତେ ରଖ ମହାବାହୁ"

ସେ ସମୟରେ ଗୀତ ବୋଲିବା ଆଗରୁ କେତେକ ଧରାବନ୍ଧା ନିୟମ ମାନିବାକୁ ପଡ଼ୁଥିଲା । ଆକାଶବାଣୀର ସଙ୍ଗୀତ ସ୍ୱୀକୃତ ପତ୍ରରେ (Contact sheet) ଦସ୍ତଖତ ଦେବା ପୂର୍ବରୁ ଚିନ୍ତା କରିବାକୁ ପଡ଼ୁଥିଲା—

(କ) ଭଜନ ଜଣାଣ, ପ୍ରାର୍ଥନା ଓ ଭକ୍ତିସଙ୍ଗୀତ ପ୍ରତ୍ୟେକ ଅନ୍ୟ ଠାରୁ ଭିନ୍ନ । ଆଜକାଲି ଭଜନ ଜଣାଣରେ, ଜଣାଣ ପ୍ରାର୍ଥନାରେ ଅନ୍ତର୍ଭୁକ୍ତ କରି କପରି କାମ ଚଳାଇଦେବା ଚାଲିଛି ।

(ଖ) ପ୍ରଥମେ ହାରମୋନିୟମ୍ ନିଜେ ଗାୟକ ବଜାଇ ସ୍ୱର ସାଧନା କରୁଥିଲି । ପରେ ଆକାଶବାଣୀର ନିର୍ଦ୍ଦିଷ୍ଟ ନିଯୁକ୍ତ କଳାକାର ସଙ୍ଗତ କଲେ । ତାପରେ ହାରମୋନିୟମ ଅନୁମତି ବନ୍ଦ କରିଦିଆଗଲା ।

(ଗ) ସଙ୍ଗୀତ ପ୍ରଚାର ହେବାର ୨।୩ ଦିନ ପୂର୍ବରୁ ଅଭ୍ୟାସ (Rehearsal) ବାଦ୍ୟଯନ୍ତ୍ର, ପ୍ରଚାରଯନ୍ତ୍ର ସହ ମିଳାଇ ପ୍ରଚାର ଦିବସର ଠିକ୍ ସମୟରେ ପରିବେଷଣ କରାଯାଉଥିଲା । କ୍ୟାସେଟ୍ ବ୍ୟବସ୍ଥା ବା Pre-Recording ହେଉ ନ ଥିଲା । କେବଳ ସ୍ୱତନ୍ତ୍ର ସ୍ଥଳରେ Master Disc ବା 'ଜଉତିଆରି ରେକର୍ଡ଼' ତିଆରି କରି ରଖାଯାଉଥିଲା ।

(ଘ) ଗୀତର ରଚୟିତାଙ୍କର ପ୍ରାମାଣିକତା ମଧ୍ୟ ପରୀକ୍ଷା କରାଯାଉଥିଲା । ତେଣୁ, ଏପରିକି ସ୍ୱାଧୀନତା ପରବର୍ତ୍ତୀ ପର୍ଯ୍ୟାୟରେ ଗୀତର ସଂଖ୍ୟା ମୁଷ୍ଟିମେୟ ଥିଲା । ଏବଂ ଗୋଟିଏ ଗୀତ ସପ୍ତାହ ମଧ୍ୟରେ ୩।୪ ଥର ପ୍ରଚାରିତ ହେଉଥିଲା ।

## ପାଠ ପଢ଼ିଥିଲେ ଗୀତ ବୋଲୁଥାଏ :

କେବଳ ସେତିକି ନୁହେଁ କୃଷ୍ଣବାବୁ, ଓଡ଼ିଶୀ ଛାନ୍ଦ ପ୍ରଭୃତି ବୋଲିବାବେଳେ ଏବେ ଗୀତର ମୌଳିକ ରାଗ, ବୃତ୍ତ, ଛନ୍ଦ, ତାଳ ପରିବର୍ତ୍ତନ କରିବା ଫଳରେ ଗୀତର ମୌଳିକ ଅର୍ଥ ବ୍ୟର୍ଥ ହେଉଛି ।

କେବଳ ସୂକ୍ଷ୍ମ ସ୍ୱର, ତାଳ ଲୟ ଠିକ୍ ରହୁଥିବାରୁ ଅର୍ଥଗତ ପାର୍ଥକ୍ୟ ପ୍ରତି ସଙ୍ଗୀତ ଶିଳ୍ପୀ, ଶିକ୍ଷକ ତଥା ଶ୍ରୋତା ମଧ୍ୟ ଧ୍ୟାନ ଦେଉନ୍ତି ନାହିଁ ।

ତେବେ ପୁରାତନ ସଙ୍ଗୀତ ସାଧନା-ଶୈଳୀରେ ଭାବ, ରସର ଉଦ୍ରେକ ହେଉଥିଲା ପ୍ରକୃତ ଅର୍ଥ ବୋଧ ଉପରେ । ତେଣୁ ସ୍ୱରର ବ୍ୟୁତ୍ପତ୍ତି ସଞ୍ଚାର ଓ ସ୍ଫୁରଣ ଯଥାଯୁକ୍ତ ହେଉଥିଲା ! ଆଜିକାଲି ଭଜନ, ଜଣାଣକୁ ସୁଆଙ୍ଗ, ଅପେରା, ଧାଙ୍ଗଡ଼ା ଧାଙ୍ଗଡ଼ୀ ନୃତ୍ୟ ଶୈଳୀରେ ଚଳାଇଲେଣି ।

ଅନର୍ଗଳ ଭାବରେ ନୃସିଂହନାଥ ଖୁଣ୍ଟିଆ ତାଙ୍କ ଅନୁଭୂତିର ଅଡ଼ୁଆସୁତାରୁ ଖିଅ ବାହାର କରୁଥାନ୍ତି ! ଏହି ସାକ୍ଷାତକାର ଏହି ଅକିଞ୍ଚନ ଲେଖକ ପକ୍ଷରେ ଏକ ଦୁର୍ଲ୍ଲଭ ବସ୍ତୁ ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ ।

ସଙ୍ଗୀତଗୁରୁ ପରିଚୟ କ୍ରମରେ ତାଙ୍କର ମତାମତ—ବିଶାରଦ, ଅଳଙ୍କାର ଉପାଧିଧାରୀ ସଙ୍ଗୀତ ଶିଳ୍ପୀ, ଶିକ୍ଷକଙ୍କର ସଙ୍ଗୀତ ସମ୍ରାଟ ତାନସେନ ଜଣେ ମୋଗଲ ଥିଲେ ବୋଲି ଏବକାର ଧାରଣା ଅତ୍ୟନ୍ତ ଦୁଃଖପ୍ରଦ । ସେ ଥିଲେ ଗୋୟାଳିୟର ଗୌଡ଼ୀୟ ବ୍ରାହ୍ମଣ । ନାଁ ଥିଲା ରାମତନ ପାଣ୍ଡେ । ଏଥିରୁ ସ୍ପଷ୍ଟ ଅନୁମିତ, ନାଥ ଖୁଣ୍ଟିଆଙ୍କର ସଙ୍ଗୀତକୁ ସଙ୍ଗୀତଭାବରେ ଦେଖିବା, ବୁଝିବା, ଗାଇବା ପ୍ରକୃତ ସଙ୍ଗୀତଜ୍ଞଙ୍କ ଲକ୍ଷଣ ଅଟେ ।

## ସାଙ୍ଗୀତିକ-ସାନ୍ନିଧ୍ୟ :

ପଣ୍ଡିତ ସଙ୍ଗୀତଗୁରୁ ନୃସିଂହନାଥଙ୍କର ସତ୍‌ସଙ୍ଗ ଓ ସାଙ୍ଗୀତିକ ସାନ୍ନିଧ୍ୟ ବଡ଼ ହୃଦୟସ୍ପର୍ଶୀ । ସଙ୍ଗୀତ ମାର୍ତ୍ତଣ୍ଡ ପଣ୍ଡିତ ଓଁକାରନାଥ ଠାକୁର ଶ୍ରୀକ୍ଷେତ୍ର ରହଣୀ ସମୟରେ ଥରେ ଶ୍ରୀମନ୍ଦିରରେ ଦର୍ଶନ ସାରି ବସିଥାନ୍ତି । ଅଗଣିତ ଭକ୍ତଙ୍କର ଅନୁରୋଧ କ୍ରମେ ଭଜନ ବୋଲିବାକୁ ପୁରୀର ଗଜପତି ମହାରାଜାଙ୍କଠାରୁ ଅନୁମତି ଆବଶ୍ୟକ ହେଲା । ଗଜପତି ରାଜଗୁରୁଙ୍କୁ କହିଲେ—ରାଜଗୁରୁ ମହାଶୟ ! ଆଦେଶ ଦେବା ଅପେକ୍ଷା ନିଜେ ଯାଇ ଉପସ୍ଥିତ ହେଲେ କ'ଣ ବା ଦୋଷ ହୋଇଯିବ ?

ରାଜଗୁରୁ—ନାଁ ମହାରାଜ ! ଦୋଷାଦୋଷ ନାହିଁ ଯେ, ପଣ୍ଡିତ ଓଁକାରନାଥ ଶ୍ରୀନବରରେ ବିଜେ କରି ତାଙ୍କର ଅଭିପ୍ରାୟ ଜଣାଇବା କଥା । କିନ୍ତୁ···

ମହାରାଜ—ପଣ୍ଡିତ ଓଁକାରନାଥଜୀ ଜଣେ ଯୋଗଜନ୍ମା ଓ ଦୈବୀ ଅଂଶରେ ଜାତ ବରେଣ୍ୟ ବ୍ୟକ୍ତିସକଳ । ଶ୍ରୀଜଗନ୍ନାଥଙ୍କ ପାଖରେ ସେ ଯେତେବେଳେ ପହଞ୍ଚୁଥିବେ ମୋ'ଠାରେ ପହଞ୍ଚିଛନ୍ତି । ଅତଏବ ସାଯୁଜ୍ୟ ଉପସ୍ଥିତ ହିଁ ବର୍ତ୍ତମାନ । ସେଭଳି ମହାପୁରୁଷ, ଗୁଣୀ, ଜ୍ଞାନୀ, ସାଧୁ, ସନ୍ଥଙ୍କର ଦର୍ଶନ, ସ୍ପର୍ଶ, ଭଜନ ଶ୍ରବଣର ସୌଭାଗ୍ୟ ଦୁର୍ଲ୍ଲଭ । ଏଣୁ ଆସନ୍ତୁ ଯିବା ।

ଧର୍ମଧାରଣା, ଆତ୍ମୀୟତା, ଉଦାରତା, ପୂଜ୍ୟପୂଜା ଉପରେ ଥିଲା ତା'ର ଏହା ଏକ ଜଳନ୍ତ ଦୃଷ୍ଟାନ୍ତ—ନୃସିଂହନାଥ କହିଲେ—ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରଫେସର ପ୍ରେମଲତା ଶର୍ମା ହାରମୋନିୟମ୍, ବାଦ୍ୟବିନୋଦ କ୍ଷେତ୍ରମୋହନ କର ତବଲା ସଂଗତ କରୁଥାନ୍ତି । ଶ୍ରୀଜୀଉଙ୍କ ଭିତରକାଠଠାରୁ ଗରୁଡ଼ ସ୍ତମ୍ଭ ପର୍ଯ୍ୟନ୍ତ ଜନସମୁଦ୍ର । ଓଁକାରନାଥଜୀଙ୍କ ଭଜନ ସମାପ୍ତିରେ ଶ୍ରୀଜଗନ୍ନାଥଙ୍କର ଏକ ଧଣ୍ଡାମାଳ ଛିଣ୍ଡି ପଡ଼ିଲା । ଏହା ପ୍ରତ୍ୟକ୍ଷ ଘଟଣା । ନୃସିଂହନାଥ ଖୁଣ୍ଟିଆଙ୍କୁ ଓଁକାରନାଥ ଠାକୁରଙ୍କ ପଣ୍ଡା ଫକୀର ଗୋଚ୍ଛିକାର ଭଜନ ବୋଲିବାକୁ କହିଲେ । ଶଙ୍କର ଭରଣରେ ସେ ବୋଲିଲେ—

"ହୋଇଥାରେ ବେଶ କୁଞ୍ଜକୁ ଯିବୁ ପରା ॥"

ଓଁକାରଜୀ କହିଲେ—"ଆପକା ଗାନା ବହୁତ୍ ଅଚ୍ଛା ହେ ।" ନୃସିଂହନାଥ ନତମସ୍ତକ ହୋଇ ଆଶୀର୍ବାଦ ଭିକ୍ଷା କଲେ ।

ପଣ୍ଡିତ ରତନ ଝଙ୍କାର—ହିନ୍ଦୀ, ବଙ୍ଗଳା ଭାଷା ପ୍ରବୀଣ ସଙ୍ଗୀତଜ୍ଞ । କଲିକତା ମୋରିସ୍ କଲେଜ (Morris College)ରେ ଏକ ସାଂସ୍କୃତିକ କାର୍ଯ୍ୟକ୍ରମରେ ଆସିଥାନ୍ତି । ଖବର ପାଇ ସିଂହାରୀ ଶ୍ୟାମସୁନ୍ଦର କର ଓ ମୁଁ ଗଲୁ । ସାଙ୍ଗରେ ମାଳ ମାହାର୍ଦ୍ଧ (ଶ୍ରୀମହାପ୍ରସାଦ) ଆମର ଥିଲା । ନିଶ୍ଚଳ ହୋଇ ବସି ଉଚାଙ୍ଗ କଣ୍ଠରେ ବୋଲୁଥାନ୍ତି ।

ସଙ୍ଗୀତ-ରଥର ଦଉଡ଼ି ଟାଣିବାକୁ ଗୁରୁ ନୃସିଂହନାଥ ଶ୍ରୀକ୍ଷେତ୍ରର ଦାରୁବ୍ରହ୍ମଙ୍କର ରୂପାୟିତ ବ୍ରହ୍ମ ନାଦ, ଅକ୍ଷର, ସ୍ୱରବ୍ରହ୍ମ ଉପାସନା ପାଇଁ

ଦୂରଦୂରାନ୍ତ ସ୍ଥାନକୁ ଗମନ କରନ୍ତନ୍ତ । ଅଜାଙ୍କ ସଙ୍ଗେ ଛତ୍ରପୁର (ମଧ୍ୟ-ପ୍ରଦେଶ), ଝାନସୀ ପାଖେ ଛତ୍ତଆ, ପାନ୍ନା, ବଜାଓ୍ୱର ଷ୍ଟେଟ୍ ଯାଆନ୍ତ । ରାଜଦରବାରରେ ସ୍ୱନକ୍ଷତ୍ର, ଶାଲଗିରା (ବାବାଙ୍କର ପୂର୍ତ୍ତି ଦିବସ) ପ୍ରଭୃତି ଉତ୍ସବ ଅବସରରେ ତାଙ୍କର ଅଜା (ଶ୍ରୀର୍ଥ ପଣ୍ଡା) ଓ ତାଙ୍କୁ (ନୃସିଂହ-ନାଥ)ଙ୍କୁ ରାଜଦରବାରରେ ସଙ୍ଗୀତ ଗାୟନ କରି ମନୋରଞ୍ଜନ କରିବା ପାଇଁ ରାଜପଣ୍ଡିତ ବାରଣ କଲେ । କାରଣ ସେସବୁ ଅନୁଷ୍ଠାନରେ ନାଚବାଲୀ ପ୍ରଭୃତି କାର୍ଯ୍ୟକ୍ରମ ପରିବେଷଣ କରିଥିବାରୁ ପଣ୍ଡିତ ଓ ଗୁରୁ ବୋଲିବା ରାଜନିନ୍ଦା ଅଟେ । କିନ୍ତୁ ରାଜଦରବାରରେ କେବଳ ସଙ୍ଗୀତ ଆସର ବେଳେ ନୃସିଂହନାଥ ବହୁବାର ଧ୍ରୁପଦ ଗାୟନ କରି ରାଜ ସମ୍ମାନିତ ହୋଇଜନ୍ତ ।

ପାନ୍ନା State ରାଜା ଖୁଣ୍ଟିଆଙ୍କ ଘରକୁ (ଶ୍ରୀକ୍ଷେତ୍ର) ଆସନ୍ତ । ସଙ୍ଗୀତଜ୍ଞ କୃଷ୍ଣକୁମାର ଶାସ୍ତ୍ରୀ ମଧ୍ୟ ଆସନ୍ତ । ସଙ୍ଗୀତ-ସନ୍ଧ୍ୟା ବେଶ ଜମେ । ବାହାରୁ ଆସୁଥିବା ଶିଳ୍ପୀମାନେ ଶ୍ରୀକ୍ଷେତ୍ରରେ ସାଂସ୍କୃତିକ କାର୍ଯ୍ୟକ୍ରମ କଲେ କୌଣସି ଆର୍ଥିକ ପ୍ରାପ୍ୟ ସ୍ୱୀକାର କରୁ ନ ଥିଲେ । କେବଳ ଶ୍ରୀମହାପ୍ରସାଦ ହିଁ ଏକମାତ୍ର ସମ୍ବଳ, ଉପହାର, ପ୍ରାପ୍ୟ ଥିଲ ।

## ସଙ୍ଗୀତ କୃତୀ କରଣୀର ବୁଲ୍‌ବୁଲ୍ :

ଗୁରୁ ନୃସିଂହନାଥଙ୍କର ସଙ୍ଗୀତ ବାଟିକା ଗାନକାରୀ ପକ୍ଷୀ ପକ୍ଷିଣୀଙ୍କର ସୁମଧୁର କାକଳିରେ ମୁଖରିତ । ଆଜୀବନ ବ୍ରହ୍ମଚାରୀ ଭାବେ ଜୀବନର ସ୍ୱାଦ ବୋଲିବା, ବୋଲାଇବା ଓ ଶୁଣିବାରେ ହିଁ ସେ ପା'ନ୍ତ । ପୁରୀର ପ୍ରାଚୀନତର ହାଇସ୍କୁଲ ଗଦାଧର ଉଚ୍ଚବିଦ୍ୟାଳୟର ସଙ୍ଗୀତ ଶିକ୍ଷକ ଭାବେ ଦୀର୍ଘ ୧୫ ବର୍ଷର ଅଭିଜ୍ଞତାରେ ସଙ୍ଗୀତକୁ ଅତିରିକ୍ତ (Optional) ବିଷୟ ଭାବେ ଶିକ୍ଷା ଦେଇ ମାଟ୍ରିକୁ୍ୟଲେସନ୍ ପରୀକ୍ଷାର୍ଥୀ ପ୍ରସ୍ତୁତ କରିବାରେ ସେ ଥିଲେ ଧୁରନ୍ଧର ! ତାଙ୍କ ନିଷ୍ଠା, ଶ୍ରଦ୍ଧାଭକ୍ତି ଓ ଉଦ୍ୟମରେ କେତେ ବୁଲ୍‌ବୁଲ୍, ନାଇଟିଙ୍ଗେଲ୍, କୋକିଳ ସୃଷ୍ଟି ହୋଇଛନ୍ତ ।

ସେମାନଙ୍କ ମଧ୍ୟରେ ଶ୍ରୀ ଜଗବନ୍ଧୁ ପାଢ଼ୀ (ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାର), ଶ୍ରୀମତୀ ଇନ୍ଦିରା ପ୍ରତିହାରୀ (ପୁରୀ ଜିଲ୍ଲା

ସ୍କୁଲ ସମୂହର ଉପପରିଦର୍ଶିକା), ଶ୍ରୀ ପ୍ରଫୁଲ୍ଲ କୁମାର କର, ସଙ୍ଗୀତଜ୍ଞ, ସଙ୍ଗୀତ ନିର୍ଦ୍ଦେଶକ, ଡଃ ଦାମୋଦର ହୋତା (ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ), ଡଃ ମୋହନ ଚରଣ ସେନାପତି, ସଙ୍ଗୀତଜ୍ଞ, ଶ୍ରୀମତୀ ଭୁବନେଶ୍ୱରୀ ମିଶ୍ର (କେନ୍ଦ୍ରୀୟ ବିଦ୍ୟାଳୟ, ପୁରୀ), ଡଃ ମୋହିନୀ ମୋହନ ପଟ୍ଟନାୟକ (ମୃଷି), (ବଂଶୀ ବାଦକ) ଲୋକନାଥ ବ୍ରହ୍ମଚାରୀ, ବିଶ୍ୱନାଥ ମିଶ୍ର, ଶୁକଦେବ ପତି, ରାଧାମଣି ମହାପାତ୍ର, ୵ କେଦାର ଗୁରୁ, ବ୍ରଜସୁନ୍ଦର ଦାସଙ୍କ ପୁତ୍ର ନଟଗୋପାଳ ଦାସ, ଗାୟକ ଘନଶ୍ୟାମ ପଣ୍ଡା, ହରିହର ଖୁଣ୍ଟିଆ ଏବଂ ନୃତ୍ୟ ପଟ୍ଟିୟସୀ ସୋନାଲ ମାନସିଂହଙ୍କର ପ୍ରଚ୍ଛଦପଟ୍ଟ ଗାୟକ, ଚଳଚ୍ଚିତ୍ରର ସଙ୍ଗୀତଜ୍ଞ ଶ୍ରୀ ବଙ୍କିମ ସେଠୀଙ୍କର ନାମ ପ୍ରଣିଧାନ ଯୋଗ୍ୟ ।

ଗୁରୁ ନୃସିଂହନାଥଙ୍କର ପ୍ରିୟତମ ବାଧ୍ୟତମ ଛାତ୍ର ହେଲେ ଡଃ ଦାମୋଦର ହୋତା । ଗୁରୁଙ୍କ ପ୍ରତି ଡଃ ହୋତାଙ୍କର ଭକ୍ତି, ଆନୁଗତ୍ୟ ଯେପରି ଅଧିକ, ଗୁରୁଙ୍କର ସନ୍ତାନବତ୍ସଳତା, ଶ୍ରଦ୍ଧା, ସ୍ନେହ ତଥାଗତ । ଛାତ୍ରଛାତ୍ରୀଗଣ ଦେଶ ବିଦେଶରେ ସଙ୍ଗୀତ, ନୃତ୍ୟ, ବାଦ୍ୟ, ଆକାଶବାଣୀ, ଦୂରଦର୍ଶନ, ଚଳଚ୍ଚିତ୍ର ତଥା ଶିକ୍ଷା ସଂଗଠନ କ୍ଷେତ୍ରରେ ଉଚ୍ଚସ୍ତରରେ ଥାଇ ଗୁରୁ ପରମ୍ପରା ତଥା ବାଣୀ ସାଧନାରେ ସଂଶ୍ଳିଷ୍ଟ ଅଛନ୍ତି—ଏହାହିଁ ଗୁରୁ ନୃସିଂହନାଥ ଖୁଣ୍ଟିଆଙ୍କର ଗୌରବ, ଆନନ୍ଦ, ଆତ୍ମତୃପ୍ତି ଏହି ପରିଣତ ବୟସରେ ।

## ଗାୟନ ଶୈଳୀ :

"ଦେଶ ଦେଶମେଁ ଘୁମତା ଫିରତା ସାଧୁ ମହଲ୍ ଜଙ୍ଗଲ,
ଘଟା ନ ପୂଟରେ ଖାଲି ପାନସେ ଗନ୍ଦା ପାନି ଅପାର ।।"

ମହାପୁରୁଷ ଓଁକାରନାଥ ଠାକୁରଙ୍କର ଏହି ଆର୍ଷବାଣୀ ଚିରଶାଶ୍ୱତ । ସାଧୁବ୍ୟକ୍ତିଙ୍କର ହୃଦୟ ହିଁ ଆଧ୍ୟାତ୍ମିକ ରସ ପୂରିବା ହିଁ ଶ୍ରେୟ । ଗୁରୁ ପରମ୍ପରାରେ ଶୁଦ୍ଧ ଗାୟନ ସଙ୍ଗୀତର ମହାର୍ଘ ଅବଦାନ ।

ଓଡ଼ିଶୀ ଗାୟନରେ ମୌଳିକତା ରକ୍ଷା ସବୁଠାରୁ କଷ୍ଟ । କାରଣ ଅନ୍ୟାନ୍ୟ ସଙ୍ଗୀତ ପର୍ଯ୍ୟାୟ ପରି ଏହାର ବିଧିବଦ୍ଧ ଲିଖିତ ସୂଚୀ,

ଅନୁସୂଚୀ ରଖାଯାଇ ନାହିଁ । ସ୍ମୃତି ପରେ କେବଳ ଶ୍ରୁତି—ବସ୍ତୁ ରୂପେ ପାରମ୍ପରିକ ଗୀତରେ "ଚରୈବେତି"—ଚାଲିଛି । ନାଥଙ୍କ ବୋଲିବା ବେଳେ ଅର୍ଥ ଉପରେ ଗୁରୁତ୍ୱ ଦେଉଥିବାରୁ ଭାବ, ସ୍ୱର, ତାଳ ସ୍ୱତଃ ପର୍ଯ୍ୟାୟଭୁକ୍ତ ହୋଇଯାଏ ।

ଧ୍ରୁପଦ୍ ଧମାର୍ ଖୁବ୍ କମ୍ ସଙ୍ଗୀତଜ୍ଞ ଶିକ୍ଷାଲାଭ କରୁଥିଲେ । କାରଣ ୪୦ ପ୍ରକାର ଗମକ, ବାଣ୍ଟ୍, ମିଣ୍ଡ୍, ଆଳାପ (ନୁନୁତାନା ନାନା) ଏବଂ "ଅନନ୍ତ ନାରାୟଣ" ଉପରେ ଆଳାପ ସୀମାବଦ୍ଧ ।

ଶ୍ରୀଯୁକ୍ତ ଖୁଣ୍ଟିଆଙ୍କ ମତରେ ଓଡ଼ିଶୀ ଏକ ମହାସମୁଦ୍ର ! ମହା-ସମୁଦ୍ରରେ ନଦ, ନଦୀ, ଉପନଦୀ ମିଳିତ ହେଲାପରି ଓଡ଼ିଶୀକୁ ମହାସମୁଦ୍ରରେ ବିଭିନ୍ନ ସଙ୍ଗୀତ ପଦ୍ଧତିର ଅନୁପ୍ରବେଶ ଦ୍ୱାରା ଓଡ଼ିଶୀ ଶାସ୍ତ୍ରୀୟ ସଙ୍ଗୀତ କହିବାରେ ବୈମାତୃକ ଭାବ ପରିଦୃଷ୍ଟ ହେଉଛି । ଏକ ଉଦାହରଣ ଦେଇ ସେ କହନ୍ତି—

ସଂଶ୍ଳିଷ୍ଟ ପାଞ୍ଚମାତ୍ରା ବିଶିଷ୍ଟ 'ରୂପକ' ତାଳରେ ନିବଦ୍ଧ "ଦେଖିବ ପରା ଆସ ବାମନୟନା" ଓଡ଼ିଶୀ ସଙ୍ଗୀତ । ଓଡ଼ିଶୀ ସଙ୍ଗୀତ ମଧ୍ୟକୁ ୭ ମାତ୍ରା ବିଶିଷ୍ଟ କର୍ଣ୍ଣାଟକୀ 'ରୂପକ' ତାଳର ଅନୁପ୍ରବେଶ ବିରୁଦ୍ଧରେ ଉକ୍ତ ଗୀତଟି ଅନୁପ୍ରବେଶରେ ବଳି ଦୋଷ କରିଛି ! ତାଙ୍କର ପ୍ରିୟ ଓଡ଼ିଶୀ ହେଲା—

ଦେଖିବ ପରା ଆସ ବାମ ନୟନା । ମାଳଶ୍ରୀ ଓ ଜୟଦେବଙ୍କ ଶ୍ରୀଗୀତଗୋବିନ୍ଦ ଖୁଣ୍ଟିଆଙ୍କ ଅତି ପ୍ରିୟ ।

ମାଳଶ୍ରୀ—ମାଗୋ ଜୟ କୃପାମୟୀ ଚତୁର୍ବର୍ଗଦାୟୀ ମହାମାୟୀ ଆଦ୍ୟମାତା
ଏବଂ ମାଗୋ ଜୟ ହରଚଣ୍ଡୀ ଆତଙ୍କନାଶିନୀ ମହାମାୟୀ ଆଦ୍ୟମାତା ।

ହାଡ଼ୀକବି ଆନନ୍ଦ କବିଙ୍କର ଏକ ଗୀତକୁ ସ୍ମରଣ କରି ପୂରା-ମାତ୍ରାରେ ସେ ବୋଲିଲେ—

"ଭବମୋକ୍ଷଦ ଶୁଭପକ୍ଷ ସୁଶିକ୍ଷ ସୌଖ୍ୟ ମୁରାରି ଲକ୍ଷ୍ୟ କେ ବନଜାକ୍ଷ
ଜନ କଟାକ୍ଷ ଗରୁଡ଼ ପକ୍ଷୀ ବାହନ ।

× × ×

ଆନନ୍ଦକନ୍ଦ ଜ୍ଞାନଘନ ଧ୍ୟାନରେ ତବପାଦେପୂର୍ଣ୍ଣ ଆନେ ନ ଭଜ
ମାନସେ ତବ ପାମାସ୍ତୁ ତବ କାରକ ।”

ଅଧୁନା ୮୦ ବର୍ଷ ବୟସରେ ପଦାର୍ପଣ କରିଥିଲେହେଁ ଗୁରୁ ଖୁଣ୍ଟିଆ ଏକ ନିଃଶ୍ୱାସରେ ୩୬ ଅକ୍ଷର ବିଶିଷ୍ଟ 'ଘୋଷା' ଧାଡ଼ିକୁ ବୋଲିଲେ । ଏହା ଶ୍ରୀ ବାଗ୍‌ଦେବୀଙ୍କ କରୁଣା ଛଡ଼ା ଆଉ କ'ଣ ହୋଇ-ପାରେ ।

## ସଙ୍ଗୀତ—ସଂଗଠନ ଓ ସାଂଗୀତିକ ସମ୍ମାନ :

ଗୁରୁକର କରିବା ମୋହ ପ୍ରଥମରୁ ହିଁ ନଥିଲା । କେବଳ ବାଧ୍ୟବାଧ-କତାରେ, ଅନୁରୋଧକ୍ରମରେ ସାମୟିକ ଗୁରୁକର କରିବା ଥିଲା ଶ୍ରୀ ଖୁଣ୍ଟିଆଙ୍କ ଜୀବନର ଆଙ୍ଗିକ ଅନୁରାଗ ।

ସଙ୍ଗୀତ ଅନୁଷ୍ଠାନ, ସଂଗଠନ, ସଙ୍ଗୀତ ସାଧନା ତାଙ୍କ ଜୀବନର ବିଧାୟୀ ଅଟେ । ସେ କହନ୍ତି—

କଟକର ଲକ୍ଷ୍ମୀକାନ୍ତ ସଙ୍ଗୀତ ବିଦ୍ୟାଳୟରେ ଗୁରୁକର କରିଥିଲେ ୩ବର୍ଷ । ସେତେବେଳେ ଶ୍ରୀ ବୈଦ୍ୟନାଥ ମିଶ୍ର (ପ୍ରଫୁଲ୍ଲ କରଙ୍କ ଶ୍ୱଶୁର) ଓ ପୁରୀ ମ୍ୟୁନିସିପାଲ ହାଇସ୍କୁଲର ବର୍ତ୍ତମାନର ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ ରାଧାନାଥ ଟ୍ରେନିଂକଲେଜରେ B.Ed ପଢ଼ୁଥାନ୍ତି । ସେମାନଙ୍କ ଅନୁରୋଧକ୍ରମେ ପୁରୀ ଏଡୱାର୍ଡ଼ ଏମ୍.ଇ ସ୍କୁଲର "ମା" ନାଟକରେ ଆସି ଗୀତ ଶିଖାଇଲି । ନାଟକର ସଫଳତା ଗୀତଯୋଗୁ ସମ୍ଭବ ହେବାରୁ ମୋର ଶୁଭକାଙ୍କ୍ଷୀ ବନ୍ଧୁଗଣ ତଥା ଉତ୍କଳର ଜଣେ ସଫଳ କଳାକାର, ଶିକ୍ଷାବିତ୍, ପ୍ରଧାନ ଶିକ୍ଷକ ଶ୍ରୀ କୃଷ୍ଣଚନ୍ଦ୍ର ପ୍ରତିହାରୀଙ୍କ ସୁପାରିଶରେ ପରି-ଚାଳନା ସମିତି ଓ D. P. I.ଙ୍କ ନିର୍ଦ୍ଦେଶନାମାରେ ଏଡ୍‌ୱାର୍ଡ଼ ଏମ୍.ଇ ସ୍କୁଲର ପରିବର୍ତ୍ତିତ ରୂପ ଗଦାଧର ହାଇସ୍କୁଲରେ ସାମୟିକ ସଙ୍ଗୀତ-ଶିକ୍ଷକ ରୂପେ ନିଯୁକ୍ତି ପାଇଲି । ୧୯୪୯ରୁ ୧୯୬୪ ପର୍ଯ୍ୟନ୍ତ ଶିକ୍ଷକତା କଲି ।

ସଙ୍ଗୀତ ସଂଗଠନ କ୍ଷେତ୍ରରେ ସେ ଜଣେ ଅମ୍ଳାନ ପ୍ରତିଭା । ରାଜଧାନୀ କଳା ସଂସଦ—UNIT-3, ଖୋର୍ଦ୍ଧା ଷ୍ଟେସନ ନିକଟସ୍ଥ ସଙ୍ଗୀତ ଅନୁଷ୍ଠାନ,

ଓଡ଼ିଶା ସଙ୍ଗୀତ ପରିଷଦ, ଓଡ଼ିଶୀ ବିକାଶ ପ୍ରତିଷ୍ଠାନ, ସିଂହାରୀ ଶ୍ୟାମ-ସୁନ୍ଦର ସଙ୍ଗୀତ ମହାବିଦ୍ୟାଳୟ, ସଙ୍ଗୀତ କଳା ପ୍ରତିଷ୍ଠାନ ପ୍ରଭୃତି ଅନୁଷ୍ଠାନର ଭିତ୍ତିପ୍ରସ୍ତରଠାରୁ ସୌଧ ନିର୍ମାଣ ପର୍ଯ୍ୟନ୍ତ ଲକ୍ଷାଧିକ ପ୍ରଦାନ କରିବାରେ ଶ୍ରୀ ଖୁଣ୍ଟିଆଙ୍କ ମହାର୍ଘ ଦାନ ଅବିସ୍ମରଣୀୟ ଅଟେ ।

ଓଡ଼ିଶା ସଙ୍ଗୀତ ପରିଷଦର ଆରମ୍ଭ ଦିନରୁ ସିଂହାରୀ, ଶ୍ରୀ ଖୁଣ୍ଟିଆ, ବଳି ପ୍ରତିହାରୀ, କାଶୀନାଥ ପୂଜାପଣ୍ଡା, ଆର୍ତ୍ତତ୍ରାଣ ଖୁଣ୍ଟିଆ, ଲୋକନାଥ ପଟ୍ଟନାୟକ ଏମାରମଠ ଚକଡ଼ା ପାଖେ ମଙ୍ଗୁମଠ ତଳେ ଆରମ୍ଭ କଲେ । ତାପରେ ଏହା ପୁରୀ ଟାଉନ୍ ଥାନା ପଡ଼ିଶା, ବ୍ରଜବାସୀ ପଣ୍ଡାଙ୍କ କଚେରୀ ଘରେ ଓ ଶେଷରେ ପୁରୀ ଜିଲ୍ଲାସ୍କୁଲ ସାମନାରେ ଆଜିପର୍ଯ୍ୟନ୍ତ ଏହି ଅନୁଷ୍ଠାନ ଚାଲିଛି ।

ଓଡ଼ିଶୀ ସଙ୍ଗୀତର ପ୍ରାଣପ୍ରତିଷ୍ଠାତା ସିଂହାରୀ ଶ୍ୟାମସୁନ୍ଦର କରଙ୍କ ମୃତ୍ୟୁ କଥା କହିଲାବେଳେ ମୁଁ ଦେଖିଲି ଋଷିପ୍ରତିମ, ଆଜୀବନ ସ୍ରଷ୍ଟା ଶ୍ରୀ ଖୁଣ୍ଟିଆଙ୍କ ଚକ୍ଷୁ ଲୋତକାପ୍ଲୁତ । ଜୀବନର ଶେଷ ମୁହୂର୍ତ୍ତରେ ସିଂହାରୀ ତାଙ୍କର ମନୋବେଦନା ବ୍ୟକ୍ତ କଲେ—"ନାଥ, ମୁଁ ଚାଲିଲି, ମୋ ସ୍କୁଲ ଲଗିଲା ।" ସିଂହାରୀଙ୍କ ପ୍ରଦତ୍ତ ଅର୍ଥ ଓ ସ୍ଥାନରେ ଗଢ଼ିଉଠିଥିବା ଶ୍ୟାମସୁନ୍ଦର ସଂଗୀତ ମହାବିଦ୍ୟାଳୟର ଅଧ୍ୟକ୍ଷତା ୧୯୭୫ରୁ ୧୯୮୩ ପର୍ଯ୍ୟନ୍ତ ତାଙ୍କୁ ତୁଲାଇବାକୁ ପଡ଼ିଥିଲା ।

୧୯୭୧ରେ 'ସଂଗୀତ ବିଶାରଦ' ହୋଇସାରିବାରେ ସିଂହାରୀ ଓ କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ ମୋତେ ବାଧ୍ୟ କଲେ ଉତ୍କଳ ସଂଗୀତ ମହାବିଦ୍ୟାଳୟରେ ଅଧ୍ୟାପକତ୍ୱ କରିବା ପାଇଁ । ସେମାନଙ୍କର ଅନୁରୋଧ ଭାଙ୍ଗିପାରିଲି ନାହିଁ । ତତ୍‌କାଳୀନ ମନ୍ତ୍ରୀ ମହୋଦୟ ଶ୍ରୀ ସନ୍ତୋଷ କୁମାର ସାହୁଙ୍କ ବାସଭବନରେ ଭୋଜନ ପରେ ଗୀତ ଗାଇ ଯୋଗ୍ୟ ବୋଲି ବିବେଚିତ ହେଲି । ୫।୬ ବର୍ଷପରେ ମାମୁଁଙ୍କର ପକ୍ଷାଘାତ ହେବାରୁ ତାଙ୍କର ସମସ୍ତ ଦାୟିତ୍ୱ, ମାଲିମୋକଦ୍ଦମା ପ୍ରଭୃତି ବୁଝିବାକୁ ଇସ୍ତଫା ଦେଇ ଚାଲି ଆସିଲି ବୋଲି ସେ କହିଥିଲେ ।

## ସାହିତ୍ୟିକ କୃତି :

ସଙ୍ଗୀତ-ସାହିତ୍ୟରେ ଓଡ଼ିଶୀର ମୌଳିକତା ତଥା ପାରମ୍ପରିକତା ରକ୍ଷା ଦିଗରେ ଗୁରୁ ନୃସିଂହନାଥ ଖୁଣ୍ଟିଆ ଏବଂ ତାଙ୍କର ଯୋଗ୍ୟତମ

ଉଦବର୍ତ୍ତନ ପଟ୍ଟଶିଷ୍ୟ ପଦ୍ମକେଶରୀ ପଣ୍ଡିତ ଡଃ ଦାମୋଦର ହୋତାଙ୍କର ଆପ୍ରାଣ ଉଦ୍ୟମ ପ୍ରଶଂସନୀୟ ଓ ଉଲ୍ଲେଖଯୋଗ୍ୟ ।

୧୯୮୫ ରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ପ୍ରକାଶିତ 'ଶ୍ରୀମନ୍ଦିର ସଙ୍ଗୀତମାଳା' ପୁସ୍ତକ ସଙ୍ଗୀତ ବିଶାରଦ ସଙ୍ଗୀତ ଶିରୋମଣି, ଧ୍ରୁପଦ ଭାସ୍କର ଶ୍ରୀଯୁକ୍ତ ନୃସିଂହନାଥ ଖୁଣ୍ଟିଆଙ୍କର ଏକ ଅମର ସଙ୍ଗୀତ-କୃତି । ପାରମ୍ପରିକ-ଓଡ଼ିଶୀ-ସଙ୍ଗୀତର ଏକ ଉତ୍କୃଷ୍ଟ ତଥା ପାବନ କର୍ମଶାଳା ଶ୍ରୀମନ୍ଦିରରେ ଗୀତପ୍ରିୟ ଗୋବିନ୍ଦ ଶ୍ରୀଜଗନ୍ନାଥଙ୍କ ଶ୍ରୀଚରଣାରବିନ୍ଦରେ ଉତ୍ସର୍ଗ କରାଯାଉଥିବା ଓଡ଼ିଶୀ ସଙ୍ଗୀତ, ଭଜନ, ବନ୍ଦନାର ପୁଷ୍ପମାଲ୍ୟ ଏହି ପୁସ୍ତକଟିରେ ଓଡ଼ିଶୀ ଗୀତର ପ୍ରଚଳିତ ଗାୟନ ପରମ୍ପରାକୁ ଅନୁଶୀଳନ କରି ସ୍ୱରଲିପି ନିବଦ୍ଧ କରାଯାଇଛି ।

୧୯୮୦ ମସିହାରେ ଓଡ଼ିଶୀ ବିକାଶ ପ୍ରତିଷ୍ଠାନ, ଦ୍ୱାରା ପ୍ରକାଶିତ ଉଡ୍ର ପଦ୍ଧତୀୟ 'ମେଳ-ରାଗ-ତାଳ-ଲକ୍ଷଣ' ପୁସ୍ତକର ଲେଖକମଣ୍ଡଳୀର ଆଦ୍ୟଗୁରୁ ନୃସିଂହନାଥ ଖୁଣ୍ଟିଆ । ଉଡ୍ର, ମାଗଧୀ, କଳିଙ୍ଗ ବିଶାଳ ଭୂଖଣ୍ଡର ସାଙ୍ଗୀତିକ ବ୍ୟାକରଣ ଧାରାର ଏହା ଏକ ଅପରିହାର୍ଯ୍ୟ ଅବଦାନ । ଉଡ୍ର, ହିନ୍ଦୁସ୍ତାନୀ ଓ କର୍ଣ୍ଣାଟକୀ ପଦ୍ଧତିର ମେଳ-ରାଗ ସାମଞ୍ଜସ୍ୟ ମଧ୍ୟ ଏଥିରେ ବିଦ୍ୟମାନ ।

ଏହାବ୍ୟତୀତ ଗୁରୁ ଖୁଣ୍ଟିଆଙ୍କ ପଟ୍ଟଶିଷ୍ୟ ଡଃ ଦାମୋଦର ହୋତାଙ୍କ ସଙ୍ଗୀତ-ସାହିତ୍ତ୍ୟିକ କୃତିର ମୂଳପିଣ୍ଡର ପ୍ରତିଷ୍ଠାତା ନୃସିଂହନାଥ । ଶ୍ରୀ ଖୁଣ୍ଟିଆଙ୍କ ପ୍ରତ୍ୟକ୍ଷ ପ୍ରେରଣା, ପ୍ରବେଦନା ଓ ତତ୍ତ୍ୱାବଧାନରେ କେତୋଟି ପୁସ୍ତ ପ୍ରସ୍ତୁତିତ ହୋଇଛି ଓଡ଼ିଶୀବିକାଶ ପ୍ରତିଷ୍ଠାନ ଦ୍ୱାରା—

୧ — ଡଃ ଦାମୋଦର ହୋତା (ସ୍ୱର-ରଙ୍ଗ)ଙ୍କ ଲିଖିତ—

କବିଶେଖର ଚନ୍ଦ୍ରାନନ୍ଦ ଚମ୍ପୂ ଲହରୀ,
ଛାନ୍ଦସଙ୍ଗୀତ ଲହରୀ ।
ଲକ୍ଷଣ ଓ ସ୍ୱରମାଳିକା ଲହରୀ ।

୨—ଶ୍ରୀ କାଶୀନାଥ ମୃଦୁଲଙ୍କ ଲିଖିତ ମର୍ଦ୍ଦଳ ଶିକ୍ଷା ।

## ଶ୍ରୀ ଖୁଣ୍ଟିଆଙ୍କ ଛଣା ସୁଧାସର ମଧୁର ଓଡ଼ିଶୀ ପଣା :

୧—ଶ୍ୟାମକୁ ନୋହେ ପାଶୋର,
ଶ୍ୟାମ ନାଚଲ୍ ମୋର ନୟନେ ହବା ଶଙ୍କା ।
ରାଗ-ଜୟନ୍ତଶ୍ରୀ, ତାଳ-ଏକତାଳି, ରଚନା ବନମାଳୀ

୨—ଏ ଘନ କାଳରେ ଘନକେଶୀ କି ମୋର,
ଚେଉଜଣ ରହିଲ ଦୂରରେ,
ଘନ ଦୁଃଖରେ ଥିବ ମୋ ସଜନୀ ଆରେ—
ରାଗ-ତୋଡ଼ି, ତାଳ-ଆଡ଼ ତାଳି,
ରଚନା —ଗଜପତି ଶ୍ରୀଜଗନ୍ନାଥ ଦେବ ।

୩—ଫିଟି କେଶ ଲୋଟୁଥିବ ମହୀରେ,
ପ୍ରିୟ ସହିରେ ।
ରାଗ-କର୍ଣ୍ଣାଟ, ତାଳ-ସରିମାନ, ରଚନା—ମାନଧାତା ହରିଚନ୍ଦନ ।

୪—ଜଣା ଥିଲ୍ କି ମୋତେ ଏ ରୀତି ଗୋ
ଛଣା ସୁଧାସର ପଣା ମଧୁର ଲଗୁଥିଲ୍ ଶ୍ୟାମ ପ୍ରୀତିକି ଗୋ ।
ରାଗ-ସୈନ୍ଧବୀ, ତାଳ-ଏକତାଳି, ରଚନା — କବିସୂର୍ଯ୍ୟ
ବଳଦେବ ରଥ

## ଆଠ୍ ମାନ-ସମ୍ମାନର ବୁନିୟାଦୀ :

ସ୍ଥାନୀୟ, ରାଜ୍ୟସ୍ତରୀୟ, ସର୍ବଭାରତୀୟ ସ୍ତରରେ ଶ୍ରୀଯୁକ୍ତ ଖୁଣ୍ଟିଆଙ୍କର ନିଷ୍ଠା, ବ୍ୟକ୍ତିତ୍ୱ, ମହାନୁଭବତା, ଶିକ୍ଷକତା, ସନ୍ତାନ ଓ ଛାତ୍ର ବତ୍ସଳତା, ସାଧନା ଓ ସିଦ୍ଧି, ସରଳ ନିଷ୍କପଟତାର ସ୍ୱାକ୍ଷର ବହନ କରିଛି ଅନେକ ପ୍ରଶଂସାପତ୍ର, ମାନପତ୍ର, ଉପାୟନ, ଉପଢୌକନ, ଉପାଧି । ଏ ସବୁର ପ୍ରାଚୁର୍ଯ୍ୟ ମଧ୍ୟରେ ଶ୍ରୀଯୁକ୍ତ ଖୁଣ୍ଟିଆ ନିର୍ବିକାର, ନିର୍ବିକଳ୍ପ, ଯୋଗୀ । ପ୍ରଶଂସାପତ୍ର ଗୁଡ଼ିକ ହେଲ୍—

୧ । ୧ । ୧୯୩୭—କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ।

୧୨ । ୧୨ । ୧୯୪୯ —ମାନ୍ୟବର ରାଜ୍ୟପାଳ ।

୧୪ । ୧୧ । ୧୯୭୩—ଲୋକନାଥ ପଟ୍ଟନାୟକ, ଆକାଶବାଣୀ
କାର୍ଯ୍ୟକ୍ରମ ଉପଦେଷ୍ଟାମଣ୍ଡଳୀ ସଭ୍ୟ ।
କୃଷ୍ଣ ପ୍ରତିହାରୀ, ପ୍ରଧାନଶିକ୍ଷକ, ଗଦାଧର
ହାଇସ୍କୁଲ, ପୁରୀ ।

୨୭ । ୧୧ । ୧୯୭୩—ପ୍ରହଲ୍ଲାଦ ମଲ୍ଲିକ, ମାନ୍ୟବର ଉପମନ୍ତ୍ରୀ,
ଜଳସେଚନ ଓ ଶକ୍ତି ସମ୍ପାଦକ, ରାଜଧାନୀ
କଳା ସଂସଦ ।
ଗଜପତି ମହାରାଜା ବୀରକିଶୋର ଦେବ ।

୧୨ । ୧୨ । ୧୯୭୩—ପଣ୍ଡିତ ବଳବନ୍ତ ରାଓ ଭଟ୍ଟ, ଅଧ୍ୟାପକ
ସଙ୍ଗୀତ ଓ କଳା ବିଭାଗ ବନାରସ ହିନ୍ଦୁ
ବିଶ୍ୱବିଦ୍ୟାଳୟ ।

—ପ୍ରେମଲତା ଶର୍ମା, ପ୍ରାଧ୍ୟାପିକା, ଶ୍ରୀକଳା ସଙ୍ଗୀତ ଭାରତୀ, ବନାରସ—ଲକ୍ଷ୍ମୀକାନ୍ତ ସଙ୍ଗୀତ ମହାବିଦ୍ୟାଳୟ (ଉତ୍କଳ ସଙ୍ଗୀତ ସମାଜ, କଟକ), ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ, ଭୁବନେଶ୍ୱର ।

—ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର ।
୧୯୮୨—ଶ୍ୟାମସୁନ୍ଦର ସଙ୍ଗୀତ ମହାବିଦ୍ୟାଳୟ, ପୁରୀ ।
—ଜୟଦେବ ସଙ୍ଗୀତ ପରିଷଦ ।
—ଓଡ଼ିଶୀ ସଙ୍ଗୀତ ପରିଷଦ, ପୁରୀ ।
—ଓଡ଼ିଶୀ ବିକାଶ ପ୍ରତିଷ୍ଠାନ, ପୁରୀ ।
୧୯୮୭—ସଙ୍ଗୀତ କଳା ପ୍ରତିଷ୍ଠାନ, ପୁରୀ ।
୧୯୮୫—ଶ୍ରୀକ୍ଷେତ୍ର କଳା ପ୍ରକାଶିକା, ସଙ୍ଗୀତ ଶିରୋମଣି ଉପାଧି ପ୍ରଦାନ ।
୧୯୭୩—କଳା ବିନୋଦ ।
୧୯୭୯—ଓଡ଼ିଶା ସଂଗୀତ ନାଟକ ଏକାଡେମୀ ।
୧୯୮୭—କଳିଙ୍ଗ ସଂସ୍କୃତି ବିକାଶ କେନ୍ଦ୍ର, ପୁରୀ ।
—ଶ୍ରୀକ୍ଷେତ୍ର କଳା ସାଂସ୍କୃତିକ ସଂସଦ, ପୁରୀ ।
—ଉଦୟନ ସାଂସ୍କୃତିକ ଏକାଡେମୀ, ପୁରୀ ।

ଶ୍ରୀଯୁକ୍ତ ନୃସିଂହନାଥ ଖୁଣ୍ଟିଆ ଓଡ଼ିଶୀ ତଥା ହିନ୍ଦୁସ୍ଥାନୀ ସଙ୍ଗୀତ କ୍ଷେତ୍ରରେ ତାଙ୍କର ଅନବଦ୍ୟ ଦାନ, ସେବା ନିଷ୍ଠା ପାଇଁ ଭୂୟସୀ ପ୍ରଶଂସା, ସମ୍ମାନ ଓ ପୂଜ୍ୟପୂଜାର ଯୋଗ୍ୟ ହୋଇପାରିଛନ୍ତି ।

ଏହି ମହିମାନ୍ୱିତ ପିତାମହ ଭୀଷ୍ମ ସଦୃଶ ଆଜୀବନ ଚିରକୁମାର, ସଙ୍ଗୀତ ସାଧକ ଅଶୀତିତମ ବୟଃପ୍ରାପ୍ତ ଶ୍ରୀଯୁକ୍ତ ଖୁଣ୍ଟିଆ ପୁରୀ ଗଦାଧର ଉଚ୍ଚ ବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମୟରେ ଦୀର୍ଘ ୪ ବର୍ଷର ସଙ୍ଗୀତ-ଗୁରୁ ।

ଆଜିର ବେତାରଶିଳ୍ପୀ ଶ୍ରୀମତୀ ଇନ୍ଦିରା ପ୍ରତିହାରୀ ସେତେବେଳର ଆମ ଉପର ଶ୍ରେଣୀର ଛାତ୍ରୀ । ସୁଲଳିତ କଣ୍ଠରେ ସେମାନେ ପ୍ରାର୍ଥନା ଗାଆନ୍ତି ! ଗୁରୁଖୁଣ୍ଟିଆ, ଭାରି ସ୍ନେହୀ ଓ ଛାତ୍ରବତ୍ସଳ । ଜଗବନ୍ଧୁ ପାଢ଼ୀ, ରେଜିଷ୍ଟ୍ରାର ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ଖୁବ୍ ଦରିଦ୍ର ଥିଲେ । ଗୁରୁ ଖୁଣ୍ଟିଆହିଁ ତାଙ୍କୁ ଚଳାଉଥାନ୍ତି, ମୋର ଲକ୍ଷ୍ୟ ହେଉଛି ।

'ରାଜପୁତ୍ର କୁନାଳ' — ଓଡ଼ିଶା ଶିଶୁନାଟକ ଉତ୍ସବରେ ଏକ ସଫଳ କୃତିତ୍ୱ ଅର୍ଜନ କରିଥିବା ନାଟକ । ବେତାର, ଚଳଚ୍ଚିତ୍ର ଶିଳ୍ପୀ ଦୁର୍ଗାଚରଣ ଶତପଥୀ ରାଜା ଅଶୋକ, ମୁଁ ବୌଦ୍ଧ ସନ୍ନ୍ୟାସୀ ଓ ସୈନିକ ଭୂମିକା ଗ୍ରହଣ କରିଥାଉ । ଲବ୍‌ଧପ୍ରତିଷ୍ଠ କଳାକାର, ନିର୍ଦ୍ଦେଶକ ଓ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ପ୍ରତିହାରୀ ଓ ଗୁରୁ ନୃସିଂହନାଥ ଖୁଣ୍ଟିଆଙ୍କ ବଳିଷ୍ଠ ସଙ୍ଗୀତ ନିର୍ଦ୍ଦେଶନା ଅବିସ୍ମରଣୀୟ !

ମୋର ପିତା ୰ ଗଙ୍ଗାଧର ମହାପାତ୍ର ଆଲିଆସ୍ ଗଙ୍ଗାଧର ମାଷ୍ଟର ଆକାଶବାଣୀ କଟକ କେନ୍ଦ୍ରର ଜଣେ ସ୍ୱୀକୃତିପ୍ରାପ୍ତ ଗୀତିକାର ! ତାଙ୍କର ଭଜନ, ଜଣାଣ, ପଲ୍ଲୀଗୀତ ନେଇ ମୁଁ ନାଥଖୁଣ୍ଟିଆ, ଲୋକନାଥ ରଥ, ସିଂହାରି ଶ୍ୟାମସୁନ୍ଦର କର, ମାର୍କଣ୍ଡେୟ ମହାପାତ୍ର, ପ୍ରଫୁଲ୍ଲ କର, ଇନ୍ଦିରା ପ୍ରତିହାରୀ, କାଶୀନାଥ ପୂଜାପଣ୍ଡାଙ୍କୁ ଦେଉଥିଲି ।

ଗୁରୁ ନାଥ ଖୁଣ୍ଟିଆ ସୌମ୍ୟ କାନ୍ତ ସୁଗଠିତ ଶରୀରଯୁକ୍ତ । ଦୀର୍ଘ ନାସା, ଆଜାନୁଲମ୍ବିତ ବାହୁ ବପୁ ଏବଂ ଶୁଭ୍ର ଧୋତି ପଞ୍ଜାବୀ ପରିହିତ ! ସେ ଖୁବ୍ ସୌଖୀନ ! ଏବେବି ଏ ବୟସରେ ବାହାରକୁ

ବାହାଘରେ ମଖମଲ ଗିଲକଗ ପଞ୍ଜାବୀ ଓ କୁଞ୍ଚକର ଧୋତି ନିଖୁଣ-ଭାବରେ ପିନ୍ଧନ୍ତି ! ଗୁଳ ତାଙ୍କର ମଣିବମାନ ପରି ଧୀର, ନମ୍ର, କମ୍ର ଦୋଳାୟମାନ !

ବିଭିନ୍ନ କାର୍ଯ୍ୟକ୍ରମରେ ମୁଁ ତାଙ୍କ ପାଖକୁ ଯାଏ । ସେ ଆନନ୍ଦରେ କୋଳେଇ ନିଅନ୍ତି ! ଘର ସଂସାର ନକର ସୁଦ୍ଧା ସେ ପିଲାଙ୍କୁ ଖୁବ୍ ଆଦର, ଯତ୍ନ, ସ୍ନେହ କରନ୍ତି । ତାଙ୍କର ପିତୃକଳ୍ପ ଆଶ୍ଳେଷ ଓ ସ୍ପର୍ଶ ଏବେ ମଧ୍ୟ ମୋତେ ପିତୃହୀନ ଜୀବନରେ ଯଥେଷ୍ଟ ଶାନ୍ତି ଦିଏ !

ମୁଁ ତାଙ୍କ ସହ ସାକ୍ଷାତକାର କରି ଫେରୁଥାଏ । ସେ ନିଜେ ହାତରେ ଟର୍ଚ୍ଚ ଧରି ପାହାଚ ପର୍ଯ୍ୟନ୍ତ କୃତ୍ୟ କୃତ୍ୟ ହେଲା ପରି ଛାଡ଼ି ଦେଇଗଲେ ! ତେଜୋଦୀପ୍ତ ମୁଖମଣ୍ଡଳରେ ଫୁଟିଉଠୁଥିବା ଗାମ୍ଭୀର୍ଯ୍ୟ, ସ୍ମିତହାସ୍ୟ, ସ୍ନେହସିକ୍ତ ଦୃଷ୍ଟିପାତ ସବୁକିଛି ଭଲଲାଗେ ତାଙ୍କର । ସେ କହିଲେ—

"କୃଷ୍ଣ ! ଆଉ ପାରୁନି ! ମଝିରେ ମଝିରେ ବି. ପି. ହେଉଛି ! ତଥାପି ବୋଲିବାକୁ ଭାରି ଇଚ୍ଛା ! ଡଃ ସଦାଶିବ ବାବୁ, ବ୍ରଜବାବୁଙ୍କର ଏ ସାଧୁଉଦ୍ୟମ ପାଇଁ ମୋ ପାଖରେ ଭାଷା କାହିଁ ? ତୁମେ କହିଦେବ ।"

ମେଳାପି, ମିଷ୍ଟଭାଷୀ ଓ କଳହ, ହଙ୍ଗାମା, ଗଜମାଡଠାରୁ ବହୁତ ଦୂରରେ ସେ । ଆଶ୍ଚର୍ଯ୍ୟର କଥା ୧୯୮୭ ମସିହା ସରସ୍ୱତୀପୂଜା ଦିନ ଓଡ଼ିଶା ସାଂସ୍କୃତିକ ଏକାଡେମୀର ପ୍ରଶିକ୍ଷଣ ବିଭାଗର ଶୁଭାରମ୍ଭ କରି ଆଶୀର୍ବଚନ ଦେଲାବେଳର ସେ ଯେଉଁ ମାର୍ମିକ ଅନୁଭବ, କେବଳ ଅନୁଭବୀହିଁ ଜାଣେ ।

ଉତ୍କଳ ବିଶ୍ୱବିଦ୍ୟାଳୟର ନାଟ୍ୟ ସଂସଦର ବାର୍ଷିକ ଉତ୍ସବରେ ଦୀକ୍ଷାନ୍ତ ଭାଷଣ ଦେଇଥିଲେ ପଞ୍ଚପୁରୋଧା ଭାବେ ଗୁରୁଜୀ । ନୃତ୍ୟନାଟିକା 'ଗ୍ଲାନି ସହାର'ର ପ୍ରେରଣା ନୃତ୍ୟଗୁରୁ ପଙ୍କଜ ଦାସଙ୍କ ନିର୍ଦ୍ଦେଶନା ଉଲ୍ଲେଖଯୋଗ୍ୟ ।

ଓଡ଼ିଶୀ ତଥା ହିନ୍ଦୁସ୍ଥାନୀ ସଙ୍ଗୀତ କ୍ଷେତ୍ରରେ ବିଶେଷ ଅବଦାନ ପାଇଁ ଓଡ଼ିଶା ସରକାରଙ୍କଠାରୁ କଳାକାର ଭତ୍ତା ପାଉଛନ୍ତି ।

**ଶେଷର ଆରମ୍ଭ :**

୧୯୩୬ ମସିହାରେ ସିଂହଦ୍ୱାରଠାରେ ମହାତ୍ମାଗାନ୍ଧିଙ୍କ ଶୁଭ-ଗମନରେ 'ଜନଗଣ ମନ ଅଧିନାୟକ' ସଙ୍ଗୀତ ଗାନକରି ଏମାରମଠାଧୀଶ ଶ୍ରୀଯୁକ୍ତ ଗଦାଧର ରାମାନୁଜ ଦାସଙ୍କ ପ୍ରଦତ୍ତ ସ୍ୱର୍ଣ୍ଣପଦକର ମଧୁରସ୍ମୃତି ତାଙ୍କ ମାନସ ପଟରେ ଉଜ୍ଜୀବିତ ।

ମୁଁ ପଚାରିଲି 'ସାର ଆପଣ ତ ବିବାହ କଲେ ନାହିଁ । ପୋଷ୍ୟପୁତ୍ର କଲେ ନାହିଁ କାହିଁକି ? ସେ କହିଲେ—

"ବୟସି ଗତେ କଂ ବନିତା-ବିଳାସ ?"

ମୁଁ ତ ନିଜେ ନିଜର ନୁହଁ । ସେହି ପ୍ରଭୁ ଜଗନ୍ନାଥଙ୍କର । ସଂସାର ଏକ ସିନେମା । କାହା ପାଇଁ ଘରଦ୍ୱାର, ଦାରା ପୁତ୍ର ? କେବେ ପ୍ରଭୁ ନେବେ, କେବଳ ଅପେକ୍ଷା ! ଏକାକୀ ଗଲେ ପ୍ରଭୁଙ୍କ ଦର୍ଶନ ମିଳିବ । ନଚେତ୍ କହିବେ 'ମୋହ, ମାୟା, ଜଞ୍ଜାଳ, ଦାରା, ପୁତ୍ରଙ୍କୁ ଗୁଡ଼ି କନ୍ଧାଇ ଆସିଛୁ, ଦର୍ଶନ ମିଳିବ ନାହିଁ !' ମୁଁ ଏକଲୟରେ ଶୁଣୁଥାଏ ଆଉ ଭାବୁଥାଏ, ଗୁବାକ୍, ନିରସେ, ପାତଞ୍ଜଳିଙ୍କ ଯୋଗଦର୍ଶନର ଆଭାସ ।

ମାମୁଁ ଫକୀର ଖଡ଼ିଆଙ୍କ ପୁତ୍ର ରାମ ପ୍ରତିହାରୀଙ୍କୁ ପୁଅ କଲେ ହରି ପଡ଼ିଆରୀ । ସାନପୁଅ ବାବୁଲି (ଲୋକନାଥ) ନାଥ'ନାଙ୍କଠାରୁ ସଙ୍ଗୀତ ଓ ଗୀତାର ଶିକ୍ଷା ଲାଭ କରିଛନ୍ତି । ଅଜାଙ୍କ ଅମଳରୁ ଏ ପର୍ଯ୍ୟନ୍ତ 'କବରି ଘୋଡ଼ା' ଚନ୍ଦ୍ର ନାଥ ଖୁଣ୍ଟିଆଙ୍କର ପରିଚିତର ଯଥାର୍ଥତା ପ୍ରତି ପାଦନ କରେ ।



# ଚିଦାନନ୍ଦ ନିତ୍ୟାନନ୍ଦ : ଏକ ଦୃଷ୍ଟିପାତ

ଡଃ ବୈଷ୍ଣବ ଚରଣ ସାମଲ

## ଚିଦାନନ୍ଦଙ୍କୁ କଳିବ କିଏ ?

ଚିଦାନନ୍ଦ ନିତ୍ୟାନନ୍ଦ ଓଡ଼ିଆ ସାହିତ୍ୟରେ ବହୁମୁଖୀ ପ୍ରତିଭାର ଅଧିକାରୀ । କେବଳ ସାହିତ୍ୟ ନୁହେଁ, ରାଜନୀତିରେ ସେ ମଧ୍ୟ ଥିଲେ ପୋଖତ ଖେଳୁଆଡ଼ । ସମାଜ ସେବା ତାଙ୍କ ଜୀବନର ଥିଲା ପରମବ୍ରତ ।

ଜଣେ ନିର୍ଭୀକ ସମାଲୋଚକ ଭାବରେ ସେ ସୁଖ୍ୟାତ । ରାଜନୀତିରେ ଯେଉଁଠି ସେ ଦେଖନ୍ତି ସ୍ଖଳନ ଓ ଦୁର୍ନୀତି ସେଇଠି ସେ ବଜ୍ରଗମ୍ଭୀର ବାଣୀରେ ଲେଖନୀର ଚାବୁକ ଧରି ଦଣ୍ଡାୟମାନ ହୋଇଯାଆନ୍ତି ।

ବ୍ୟକ୍ତିଗତ ଜୀବନରେ କୌଣସି ଅଭିଳାଷ ତାଙ୍କୁ ବିଚଳିତ କରି ନାହିଁ । ଧ୍ୟାନଗମ୍ଭୀର ତପସ୍ୱୀ ଭାବରେ ସେ ସଦାସର୍ବଦା କର୍ମଚଞ୍ଚଳ ।

ବୈଷ୍ଣବ ସୁଲଭ ନମ୍ରତା ତାଙ୍କୁ ମଣିଷ ପରି ମଣିଷଟିଏ କରି ଗଢ଼ି ତୋଳିଛି ।

ଭାଗବତୀୟ ବୈଷ୍ଣବ ଲକ୍ଷଣରେ ସେ ସମୁଜ୍ଜ୍ୱଳ । ଶିଶୁସୁଲଭ କୋମଳତାରେ ସେ କାନ୍ତ କୋମଳ । ଦୁଃଖୀର ଦୁଃଖରେ ସେ କରୁଣାରେ ବିଗଳିତ । ଅନ୍ୟାୟ ଓ ଅବିଚାର ପ୍ରତି ସେ ରୁଦ୍ରକଠୋର । କୋମଳତା ଓ କଠୋରତା ତାଙ୍କ ଜୀବନରେ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ । ଅନ୍ତରରେ ସେ ବୈରାଗୀ । ଆଚରଣରେ ସଂସାରୀ । ମାନବିକ ଭୂମା ଓ

ଜାଗତିକ ଭୂମିର ସେ ଏକ ଜୀବନ୍ତ ମିଶ୍ରରାଗ । ଚିନ୍ତା ଓ ଚେତନାର ସେ ଜୀବନ୍ତ ପ୍ରତିଭୂ । ତାଙ୍କର ଜୀବନ ସମକାଳୀନ ଓଡ଼ିଶାର ଜୀବନ୍ତ ଇତିହାସ । ଭଗବତ୍ ଭାବରେ ଅନ୍ତର ତାଙ୍କର ଉଦ୍‌ବୁଦ୍ଧ । ହୃଦୟ ତାଙ୍କର ମାନବିକତାର ସ୍ୱର୍ଣ୍ଣ ସିଂହାସନ ।

ହାତରେ ବୈଷ୍ଣବର ମାଳା । ସ୍ୱତଃ ଅଂଗୁଳିର ଗୁଳନାରେ ମାଳାର ଗତି । ସମ ତାଳରେ ଭଗବତ୍ ନାମର ନୀରବ ଉଚ୍ଚାରଣ । ସୁଦ୍ଧ ସୁନ୍ଦର ହୃଦୟରେ ମାନବିକତାର ମୁଗ୍‌ଧ ନୈବେଦ୍ୟ ।

ଊର୍ଦ୍ଧ୍ୱ ସତାଅଶୀ ବର୍ଷର ସଂଗ୍ରାମୀ ପୁରୁଷ ସଦାନନ୍ଦ ନିତ୍ୟାନନ୍ଦ ଏବେ ମଧ୍ୟ ସାଧନା ରତ ।

ଗ୍ରାମରୁ ନଗର । ନଗରରୁ ଗ୍ରାମ । ପରିବାରରୁ ସମାଜ । ସମାଜରୁ ପରିବାର । ପରିବାରରୁ ରାଜନୀତି । ରାଜନୀତିରୁ ସାହିତ୍ୟ । ସବୁଠି ଏକ ନିତ୍ୟ ଅନୁସନ୍ଧିତ୍ସୁ ସମ୍ବେଦନଶୀଳ ଦୁର୍ବାର ମନର ଅବାରିତ ଗତି । ସେହି ମନ ଖୋଜୁଛି ଋତ, ସତ୍ୟ, ତପସ୍ୟା । ଖୋଜିବା ସରିନାହିଁ । ଚରୈବେତି ଏହି ସ୍ପନ୍ଦିତ ବ୍ୟକ୍ତିତ୍ୱର ଆଦର୍ଶ । ଏହି ଶତାବ୍ଦୀ ପୁରୁଷଙ୍କୁ କିପରି କଳନା କରାଯାଇ ପାରେ ? କ'ଣ ତାର ମାପକାଠି ? ଅନନ୍ତ ଆକାଶକୁ କିପରି କଳା ହେବ ? କିପରି ମାପିହେବ ଅନନ୍ତ ସାଗରର ଗଭୀରତାକୁ ?

## ଜନ୍ମରୁ ଛିଏ :

ବାଲେଶ୍ୱର ଜିଲ୍ଲାର ଭଦ୍ରାଖ ନିକଟବର୍ତ୍ତୀ ତାଳପଦା ଗାଁର ଏକ କ୍ଷୁଦ୍ର ଜମିଦାର ଘରେ ୧୯୧୨ ମସିହା ଜୁଲାଇ ମାସ ୧୭ ତାରିଖରେ ଯେଉଁ ଶିଶୁଟିର ପାଦ୍ୟ କୁଆଁ ଧ୍ୱନି ଉଚ୍ଚାରିତ ହେଲା ସେହି ଶିଶୁଟିର ନାମ କରଣ ହେଲା ନିତ୍ୟାନନ୍ଦ । ପିତା କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର । ଆଧୁନିକ ଓଡ଼ିଆ ସାହିତ୍ୟରେ ସେ ଥିଲେ ଜଣେ ପ୍ରଥିତଯଶା କବି, ଗାଳ୍ପିକ ଓ ହାସ୍ୟରସ ସ୍ରଷ୍ଟା । ବ୍ୟାଧି ସଇତାନ କବଳରେ କବଳିତ ହୋଇ ମଧ୍ୟ ଜୀବନର ଦୁଃଖକୁ ନୀଳକଣ୍ଠ ପରି ପାନ କରି ସେ ଅମୃତର ବାଣୀ ପ୍ରଚାର କରିଯାଇଛନ୍ତି । ହାସ୍ୟରସର ଅମନ୍ଦ ମନ୍ଦାକିନୀ ବୁହାଇ ଦେଇଛନ୍ତି ଓଡ଼ିଆ ସାହିତ୍ୟରେ । ମାତା ଲବଂଗଲତା ଦେବୀ—

ଯାହାଙ୍କ ସହିତ କାନ୍ତକବିଙ୍କୁ ମଧ୍ୟସ୍ଥି ହୋଇ ବ୍ୟାସକବି ଫକୀରମୋହନ ବିବାହ କରାଇ ଦେଇଥିଲେ ।

ଏହି ପ୍ରେମମୟ ସାଧୁ ଦମ୍ପତିଙ୍କର ଯୋଗ୍ୟ ପୁତ୍ର ନିତ୍ୟାନନ୍ଦ । ପିତାମାତାଙ୍କର ସ୍ୱର୍ଗୀୟ ସ୍ନେହ ଓ ମମତାରେ ତାଙ୍କର ବାଲ୍ୟ-ଜୀବନ ବିକଶିତ ।

ପିତା ଲକ୍ଷ୍ମୀକାନ୍ତ ଉଚ୍ଚଶିକ୍ଷିତ, ଜମିଦାର ସନ୍ତାନ, ଦିବ୍ୟ କବି ପ୍ରତିଭାର ଅଧିକାରୀ । ସେହି ସୌମ୍ୟ ଯୁବକ ବ୍ୟାଧି କବଳରେ ହେଲେ ଶ୍ରୀହୀନ । ତଥାପି ତାଙ୍କର ମନ ଥିଲା ନିତ୍ୟମୁକ୍ତ, ଉଦାର ଓ ପ୍ରଶାନ୍ତ । ଭଗବାନଙ୍କ ପାଦ ପଦ୍ମରେ ସମର୍ପିତ ତାଙ୍କର ଦେହ, ମନ ଓ ପ୍ରାଣ । ଭାଗବତ ପ୍ରସାଦ ମହାପାତ୍ର ମଧ୍ୟ ଉଚ୍ଚଶିକ୍ଷିତ । କିଛିକାଳ ଶିକ୍ଷକତା କରି ବାଲେଶ୍ୱରରେ ଓକିଲାତି କଲେ ଓ ପରେ ଭଦ୍ରଖକୁ ଆସି ଓକିଲାତି ଆରମ୍ଭ କଲେ । ବହୁ ସମାଜସେବା ଅନୁଷ୍ଠାନ ସହିତ ସେ ଥିଲେ ସଂପୃକ୍ତ । ଉତ୍କଳ ସମ୍ମିଳନୀରେ ସେ ମଧ୍ୟ ଥିଲେ ଅନ୍ୟତମ ସକ୍ରିୟ ସଦସ୍ୟ । ବିହାର ଓଡ଼ିଶା ବିଧାନସଭାକୁ ସେ ଦୁଇଥର ସଦସ୍ୟ ରୂପେ ନିର୍ବାଚିତ ହୋଇଥିଲେ । ଡେପୁଟି ସ୍ପିକର ଭାବରେ ମଧ୍ୟ ସେ କାର୍ଯ୍ୟ କରିଥିଲେ । ବହୁ ସଂସ୍ଥା ସହିତ ସେ ଥିଲେ ସଂପୃକ୍ତ । ବ୍ରିଟିଶ ସରକାରଙ୍କ ଅତ୍ୟାଚାର ଓ ଶୋଷଣ ବିରୋଧରେ ସେ ସଂଗ୍ରାମ ଚଳାଇ-ଥିଲେ । କକା ସ୍ୱର୍ଗତ ସୀତାକାନ୍ତ ମହାପାତ୍ର ମଧ୍ୟ ବିହାର ଓଡ଼ିଶା ବିଧାନସଭାର ସଦସ୍ୟ ହୋଇଥିଲେ । ମାତା ଲବଙ୍ଗଲତା ଦେବୀ ଥିଲେ ବାଲେଶ୍ୱର ସୁନହଟ ଗ୍ରାମର ଜମିଦାର ଲାଲମୋହନ ଦାସଙ୍କର କନ୍ୟା । ସେ ଆଦର୍ଶପତ୍ନୀ ଓ ଆଦର୍ଶ କୁଳବଧୂ । ବ୍ୟାଧିଗ୍ରସ୍ତ ସ୍ୱାମୀଙ୍କର ସେବାରେ ଥିଲା ତାଙ୍କର ଆନନ୍ଦ । ପିତାମହ, ପିତା-ମାତା ଓ ପରିବାରର ମହନୀୟ ପରମ୍ପରାରୁ ନିତ୍ୟାନନ୍ଦଙ୍କର ହେଲା ଭୂୟୋ ବିକାଶ । ପରମ୍ପରା ସୂତ୍ରେ ସେ ଲାଭ କଲେ ରାଜନୈତିକ ବ୍ୟକ୍ତିତ୍ୱ, ଉଦାର ମାନବିକତା ଓ ସାହିତ୍ୟିକ ପ୍ରତିଭା । ଜାତୀୟତାର ମଧୁ ମନ୍ଦ୍ର ଧ୍ୱନିରେ ତାଙ୍କର ଅନ୍ତର ହେଲା ଉଦ୍‌ବୁଦ୍ଧ । ଦେଶ ଓ ଜାତିର ମୁକ୍ତି-ମନ୍ତ୍ର ହେଲା ତାଙ୍କ ଜୀବନର ସ୍ୱପ୍ନ । ସାହିତ୍ୟ ହେଲା ସେହି ସ୍ୱପ୍ନର ଉଦାତ୍ତ ଲକ୍ଷ୍ୟ । ତ୍ୟାଗ ଓ ମାନବ ସେବା ହେଲା ଜୀବନର ବ୍ରତ ।

## ବ୍ୟକ୍ତିତ୍ୱ ଗଠନ ଓ ପ୍ରତିଭାର ଆଦ୍ୟ ପ୍ରସ୍ତୁତି :

ପ୍ରତିଭା ବିଧିଦତ୍ତ । ପ୍ରତିକୂଳ ପରିସ୍ଥିତିରେ ପ୍ରତିଭାର ବିଲୟ ହୁଏ ନାହିଁ । ତୁଳସୀ ଦୁଇପତ୍ରରୁ ବାସିଲା ପରି ବାଲ୍ୟ ଜୀବନରୁ ପ୍ରତିଭାର ହୁଏ ବିକଚ ବିକାଶ । ଜନ୍ମରୁ ତିନିବର୍ଷ ପର୍ଯ୍ୟନ୍ତ ନିତ୍ୟାନନ୍ଦ ଥିଲେ ବାପା ଓ ମାଆଙ୍କ ପାଖରେ । ତତ୍ପରେ ସେ ରହିଲେ ବାପାଙ୍କ ମାମୁ ଘରେ । ସେଇଠୁ ଛଅବର୍ଷ ବୟସବେଳକୁ ସେ ଆସିଲେ ନିଜ ମାମୁଁଘର ସୁନ-ହଟକୁ । ତାଙ୍କର ଶିକ୍ଷା ଆରମ୍ଭ ହେଲା ଭଦ୍ରଖ ଓ କେନ୍ଦୁଝର ସୀମାରେ ଥିବା ଓସ୍ତପାଳ ନିକଟବର୍ତ୍ତୀ ମହୁଲପଙ୍କା ପ୍ରାଥମିକ ବିଦ୍ୟାଳୟରେ । ଏଗାର ବର୍ଷ ବୟସରେ ସେ ଆସିଲେ ଭଦ୍ରଖ । ସେଠାରେ ସେ ନିଜର ଦାଦା ଓ ପିଉସୀମାନଙ୍କ ସହିତ ଅଧ୍ୟୟନ କଲେ । ସାନଭାଇ ଗୌରଚନ୍ଦ୍ର ଓ ଦାଦାପୁଅ ଭାଇ ପାର୍ଥ ମଧ୍ୟ ସେହି ସ୍କୁଲରେ ପଢ଼ୁଥିଲେ । ଭଦ୍ରଖରେ ପଢ଼ୁଥିଲାବେଳେ ସେ ସଂସ୍କୃତ ଟୋଲରେ ସଂସ୍କୃତ ଅଧ୍ୟୟନ କରୁଥିଲେ । ନବମ ଶ୍ରେଣୀ ପର୍ଯ୍ୟନ୍ତ ସେ ଅଧ୍ୟୟନ କଲେ । ସେତିକିବେଳେ ୧୯୩୦ ମସିହାରେ ମହାମାନବ ମହାତ୍ମାଗାନ୍ଧିଙ୍କ ଆହ୍ୱାନରେ ଦେଶବ୍ୟାପୀ ଲବଣ ସତ୍ୟାଗ୍ରହ ଆରମ୍ଭ ହୋଇଗଲା । ଜାତୀୟତାବାଦୀ ନିତ୍ୟାନନ୍ଦ ଏ ଘଟଣାରେ ସ୍ଥିର ହୋଇ ରହି ପାରିଲେ ନାହିଁ । ତାଙ୍କ ପ୍ରତି ପିତାମହ ଓ ପିତାଙ୍କର ଥିଲା ପ୍ରେରଣା ଓ ଆଶୀର୍ବାଦ । ନିତ୍ୟାନନ୍ଦ ଜାତୀୟ ମୁକ୍ତି ଆନ୍ଦୋଳନରେ ଝାସ ଦେଲେ । ତାଙ୍କର ପାଠପଢ଼ାରେ ସବୁ ଦିନ ପାଇଁ ଡୋର ବନ୍ଧା ହୋଇଗଲା । ଶିକ୍ଷାୟତନରୁ ସେ ଆସିଗଲେ ଜାତୀୟ ମୁକ୍ତି-ସଂଗ୍ରାମ-କ୍ଷେତ୍ରକୁ । ଲୁଣମରା ଆନ୍ଦୋଳନର ସେ ନେଲେ ନେତୃତ୍ୱ । ତେଣୁ ସେ କାରାରୁଦ୍ଧ ହେଲେ ୧୯୩୧ ମସିହାରେ । ସେତିକିବେଳେ ସେ କାରା-କକ୍ଷରେ ମୌଲନାଙ୍କ ପାଖରୁ ଶିଖିଲେ ଉର୍ଦ୍ଦୁ । ଶିକ୍ଷାଳୟରୁ ଯିବା ବର୍ଷ ସେ ଶ୍ରେଣୀରେ ଉତ୍ତମ ଛାତ୍ର ରୂପେ ଅନେକ ପୁସ୍ତକ ପୁରସ୍କାର ପାଇଥିଲେ । ସେହିସବୁ ପୁସ୍ତକଙ୍କୁ ଏକାଠି ନେବା ତାଙ୍କ ପକ୍ଷରେ ସେଦିନ ସମ୍ଭବ ହୋଇ ନଥିଲା ।

ବିଧିର ବିଧାନ ବିଚିତ୍ର । ନିତ୍ୟାନନ୍ଦଙ୍କ ଛାତ୍ର ଜୀବନର ହେଲା ଅବସାନ । ମାତ୍ର ଊଣେଇଶି ବର୍ଷ ବୟସରୁ ସେ ହୋଇଗଲେ ଘୋଷିତ ରାଜମାତଙ୍କ । ଭାରତ ଜନନୀଙ୍କର ଅତୁଳ ଆହ୍ୱାନ ତାଙ୍କ ଭିତରେ ପ୍ରଜ୍ଜ୍ୱଳିତ

କଲା ଅଗ୍ନିର ସ୍ଫୁଲିଙ୍ଗ । ଦେଶମାତୃକାଙ୍କ ଶୃଙ୍ଖଳ ଛିନ୍ନ କରିବା ହୋଇଲା ତାଙ୍କର ଲକ୍ଷ୍ୟ । ତାଙ୍କ ପ୍ରତି ଆଶୀର୍ବାଦ ରହିଲା ପିତାମହ ଓ ପିତାଙ୍କର । କଣ୍ଟକିତ ରାଜନୀତିକ ପଥ ତାଙ୍କ ପାଇଁ ବେଦନାଦାୟକ ହେଲା ନାହିଁ । କୋମଳ କିଶୋର ହେଲା ବଜ୍ର କଠୋର । ସେ କାଳର ପ୍ରସିଦ୍ଧ ଜାତୀୟତାବାଦୀ ନେତା ରାଜକୃଷ୍ଣ ବୋଷ ଓ ଯଦୁମଣି ମଙ୍ଗରାଜଙ୍କ ସହିତ ପରମିଠ ପଡ଼ିଆରେ ସେ ମଧ୍ୟ ଦେଲେ ଲୁଣମାରିବା ପାଇଁ ଜ୍ୱାଳାମୁଖୀ ଭାଷଣ । ବାଲେଶ୍ୱରରୁ ସେ ହେଲେ ଆରେଷ୍ଟ । ବର୍ଷକ ପାଇଁ ହେଲେ କାରାରୁଦ୍ଧ । ସେହି ସମୟରେ ବନ୍ଦୀମାନଙ୍କୁ ଗୋଟିଏ ଓଳି ପଢ଼ିବାକୁ ସୁଯୋଗ ଦିଆଯାଉଥିଲା । ନିତ୍ୟାନନ୍ଦ ମଧ୍ୟ ନେଲେ ଏହି ସୁଯୋଗ । କିଛିଦିନ ପରେ ତାଙ୍କୁ ପଠାଇ ଦିଆଗଲା ଅନୁଗୁଳର ସ୍ପେଶାଲ କାରାକକ୍ଷକୁ । ସେଠାରେ କିନ୍ତୁ ଦୁଇଓଳି ବନ୍ଦୀମାନଙ୍କୁ କଠୋର କାର୍ଯ୍ୟ କରିବାକୁ ପଡୁଥିଲା । ଜାତୀୟ ବନ୍ଦୀମାନେ ପ୍ରତିବାଦ କଲେ ଏହି ନିଷ୍ଠୁରତା ବିରୋଧରେ । ଗୋଟିଏ ଓଳି ପଢ଼ିବା ପାଇଁ ସୁଯୋଗ ଦେବାକୁ ସେମାନେ ଦାବି କଲେ । ଫଳରେ ସେମାନଙ୍କ ଉପରେ ହେଲା ନିର୍ମମ ଲାଠି ମାଡ଼ । କମାଣ ଘରକୁ ନେଇ ସେମାନଙ୍କୁ ମଧ୍ୟ ପ୍ରହାର କରାଗଲା । କିଶୋର ନିତ୍ୟାନନ୍ଦ ନିର୍ମମ ଶାରୀରିକ ଯନ୍ତ୍ରଣାରେ ପନ୍ଦର ଦିନ ପାଇଁ ହେଲେ ରୋଗାକ୍ରାନ୍ତ । ମୁକୁନ୍ଦ ଦାସ ଜେଲରଙ୍କୁ ଧମକ ଦେଲେ କେଶ୍ କରିବା ପାଇଁ । ଏହାପରେ ଜେଲର ନିତ୍ୟାନନ୍ଦଙ୍କୁ ସ୍ନେହ ଓ ମମତା ପ୍ରଦାନ କଲେ । କବିତା ଲେଖିବା ପାଇଁ ମଧ୍ୟ ସହାନୁଭୂତି ପ୍ରକାଶ କଲେ ।

୧୯୩୨ରେ ପୁଣି ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେଇ ନିତ୍ୟାନନ୍ଦ କାରାବରଣ କଲେ । ଏତିକରେ ତାଙ୍କର କାରାଜୀବନ ସରିଲା ନାହିଁ । ୯୩୪ରେ ସେ ଲଗ ଲଗ ପାଞ୍ଚ ଛଅଥର କାରାରୁଦ୍ଧ ହୋଇଥିଲେ । ୧୯୪୧ରେ ଓ ୧୯୪୨ ମସିହାର ଭାରତ ଛାଡ଼ ଆନ୍ଦୋଳନରେ ଯୋଗଦେଇ ସେ ମଧ୍ୟ କାରାବରଣ କରିଥିଲେ । ବାଲେଶ୍ୱର, ଭଦ୍ରାଖ, କଟକ, ପାଟଣା, କୋରାପୁଟ, ଜୟପୁର ଓ ଅନୁଗୁଳ ପ୍ରଭୃତି ଜେଲରେ ନିତ୍ୟାନନ୍ଦ ଅନ୍ୟାନ୍ୟ ବନ୍ଦୀମାନଙ୍କ ସହିତ ରହିଥିଲେ । ଜେଲରେ ଥିଲାବେଳେ ସେ ନିୟମିତ ଅଧ୍ୟୟନ କରୁଥିଲେ । 'ଗୀତା' ଅଭ୍ୟାସ କରିବା ଥିଲା ତାଙ୍କର ପବିତ୍ର କର୍ମ । ଏତଦ୍ ବ୍ୟତୀତ ସେ ମଧ୍ୟ ଇଂରାଜୀ ଖବର କାଗଜ ଅଧ୍ୟୟନ

କରୁଥିଲେ । ନାନା ପୁସ୍ତକ ଅଧ୍ୟୟନ କରି ଆପଣାର ଜ୍ଞାନକୁ ମାର୍ଜିତ କରୁଥିଲେ । ଜାତୀୟ ମୁକ୍ତି ଆନ୍ଦୋଳନବେଳେ ସେ ବହୁ ବିଶିଷ୍ଟ ବ୍ୟକ୍ତି-ମାନଙ୍କ ସମ୍ପର୍କରେ ଆସିଥିଲେ । ଆପଣାର ଚିନ୍ତାଧାରାକୁ ଅନ୍ୟମାନଙ୍କ ସହିତ ବିନିମୟ କରିବାର ସୁଯୋଗ ସେ ଲାଭ କରିଥିଲେ ।

ସ୍ୱରାଜ ସୈନିକ ନିତ୍ୟାନନ୍ଦ । ସ୍ୱାଭିମାନରେ ଉଦ୍ଦୀପ୍ତ । ଜାତୀୟ ଆନ୍ଦୋଳନରେ ଯୋଗ ଦେଇ ସେ ଅନୁଭବ କଲେ ଭାରତର ସଙ୍କୁଚିତ ଆତ୍ମାକୁ । ବିଭିନ୍ନ ସ୍ଥାନ ପରିକ୍ରମା କରି ସେ ଦେଖିଲେ ଶୋଷିତ ପୀଡ଼ିତ ମଣିଷମାନଙ୍କର ଦୁଃଖ ଓ ଯନ୍ତ୍ରଣାକୁ । ବିଦେଶୀ ଶାସକଙ୍କର ଅତ୍ୟାଚାର ତାଙ୍କର ହୃଦୟରେ ସୃଷ୍ଟି କଲା ଭାବାନ୍ତର । ଦେଶୀୟ ରାଜା-ଜମିଦାର-ରାଜକର୍ମଚାରୀମାନଙ୍କର ଶୋଷଣ ସମ୍ପର୍କରେ ସେ ହେଲେ ଅବହିତ । ଗାନ୍ଧିଜୀଙ୍କ ଆଦର୍ଶ ତାଙ୍କୁ ଆକୃଷ୍ଟ କଲା । ଜାତି ଧର୍ମ ନିର୍ବିଶେଷରେ ସେ ଭଲ ପାଇଲେ ସବୁ ମଣିଷଙ୍କୁ । ତାଙ୍କ ଭିତରେ ପ୍ରକାଶ ପାଇଲା ଏକ ସମ୍ବେଦନଶୀଳ ମୁଗ୍ଧ ମାନବିକତା । ସେହି ମାନବିକତାରେ ଗଢ଼ି ଉଠିଲା ତାଙ୍କର ବ୍ୟକ୍ତିତ୍ୱ । ଜାତୀୟତାରେ ତାହା ହେଲା ମହିମାମୟ । ତାଙ୍କ ପ୍ରତିଭାର ହେଲା ଜୈତ୍ରଯାତ୍ରା ।

## ସ୍ୱାଧୀନ ଦେଶର ଏକକ ସୈନିକ :

ନିତ୍ୟାନନ୍ଦଙ୍କ ସ୍ୱପ୍ନର ଭାରତ ବିଦେଶୀ ଶାସନ କବଳରୁ ମୁକ୍ତି ଲାଭ କଲା ୧୯୪୭ ମସିହା ଅଗଷ୍ଟମାସ ୧୫ ତାରିଖରେ । ପରାଧୀନତାର ନାଗଫାଶ ହେଲା ଛିନ୍ନ । ବିଦେଶୀ ଶାସକ ବିଦାୟ ନେଇଗଲେ । ଜାତିର ଜନକ ମହାମାନବ ମହାତ୍ମାଗାନ୍ଧିଙ୍କର ସତ୍ୟ ଓ ଅହିଂସାର ହେଲା ବିଜୟ । ଜାତୀୟ କଂଗ୍ରେସର କାର୍ଯ୍ୟର ହେଲା ପୂର୍ଣ୍ଣତା । ଗାନ୍ଧିଜୀ ଆହ୍ୱାନ ଦେଲେ କଂଗ୍ରେସ ଆଉ ରାଜନୈତିକ ଦଳ ଭାବରେ ରହିବା ଉଚିତ ନୁହେଁ । ଏହା ଏକ ସେବାଦଳ ଭାବରେ ରହିବା ଉଚିତ । ସେତେବେଳେ କେତେକ କ୍ଷମତାଲୋଭୀ ନେତା ଏଥିରେ ରାଜି ହେଲେ ନାହିଁ । ନିତ୍ୟାନନ୍ଦ ଗାନ୍ଧିଜୀଙ୍କର ପ୍ରିୟ ଭକ୍ତ । ସେ ତେଣୁ କଂଗ୍ରେସ ତ୍ୟାଗ କଲେ ୧୯୪୮ ମସିହାରେ । 'ଡଗର' ପତ୍ରିକା ସଂପାଦନାରେ ମନୋନିବେଶ କଲେ । ସ୍ୱାଧୀନତା ପରବର୍ତ୍ତୀ ଭାରତୀୟ ଗଣତନ୍ତ୍ରର ଅବକ୍ଷୟକୁ ସେ ଲକ୍ଷ୍ୟ କଲେ । ରାଜ-ନୀତିରେ ଭେଦବାଦର ପ୍ରଭାବକୁ ସେ ଉପଲବ୍ଧି କଲେ । ସ୍ୱାଧୀନତୋ

ନିତ୍ୟାନନ୍ଦ ଏ ପରିସ୍ଥିତିରେ ସ୍ଥିର ରହିପାରିଲେ ନାହିଁ । ନିର୍ବାଚନ ରାଜନୀତିରେ ସ୍ୱାଧୀନ ସଭ୍ୟ ଭାବରେ ପ୍ରତିଯୋଗିତା କଲେ । ୧୯୫୨ ମସିହାରେ ବାଲେଶ୍ୱର ଲୋକସଭା ନିର୍ବାଚନ ମଣ୍ଡଳୀରୁ ସେ ସ୍ୱାଧୀନ ସଦସ୍ୟ ଭାବରେ ପ୍ରତିଯୋଗିତା କଲେ ମାତ୍ର ସେ ହେଲେ ପରାସ୍ତ । ତତ୍ପରେ ସେ ଭଦ୍ରଖ ବିଧାନ ସଭା ଆସନରୁ ସ୍ୱାଧୀନ ସଦସ୍ୟ ଭାବରେ ୧୯୫୭ ନିର୍ବାଚନରେ ବିଜୟ ଲାଭ କଲେ । ବିଧାନ ସଭାରେ ଜଣେ ଦକ୍ଷ ବିଧାୟକ ଭାବରେ ସେ ଗୌରବ ଅର୍ଜନ କଲେ । ସେକାଳର ଭାରତର ଅପ୍ରତିଦ୍ୱନ୍ଦ୍ୱୀ ନେତା ପଣ୍ଡିତ ଜବାହାରଲାଲ ନେହେରୁ ତାଙ୍କ ବିରୋଧରେ ୧୯୬୧ ମସିହାରେ ପ୍ରଚାର କରିଥିଲେ । ସେତେବେଳେ ମଧ୍ୟ ସେ ସ୍ୱାଧୀନ ସଦସ୍ୟ ଭାବରେ ବିଜୟୀ ହୋଇଥିଲେ । ୧୯୬୭ ମସିହାରେ ଜନସଂଗ୍ରେସରୁ ପ୍ରାର୍ଥୀ ହୋଇ ବିଧାନସଭାକୁ ନିର୍ବାଚିତ ହୋଇଥିଲେ ଓ ସ୍ୱତନ୍ତ୍ର-ଜନ-କଂଗ୍ରେସ ମନ୍ତ୍ରୀମଣ୍ଡଳରେ ଯୋଗାଣ ଓ ସାଂସ୍କୃତିକ ବିଭାଗର ମନ୍ତ୍ରୀ ଭାବରେ ୧୯୭୧ ମସିହା ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ୧୯୭୧ ମସିହାରେ ନିର୍ବାଚନରେ ପରାଜିତ ହେଲା ପରଠାରୁ ସେ ପ୍ରତ୍ୟକ୍ଷ ରାଜନୀତିରୁ ବିଦାୟ ନେଲେ ।

ନିତ୍ୟାନନ୍ଦ ବିଶ୍ୱର ଓ ଆଚାରରେ ଗଣତାନ୍ତ୍ରିକ । ଗଣତନ୍ତ୍ରର ଦୋଷ ଦୁର୍ବଳତାକୁ ସେ କଠୋର ସମାଲୋଚନା କରନ୍ତି । ଦେଶସେବା ଆସନରେ ବସି ଗଣତନ୍ତ୍ର ନାମରେ ଯେଉଁମାନେ ଜଣର ସ୍ୱାର୍ଥ ସାଧନ କରନ୍ତି ସେମାନଙ୍କୁ ସେ ସମାଲୋଚନା କରନ୍ତି । ସ୍ୱାଧୀନତା ପରଠାରୁ ରାଜନୀତିରେ ନିତ୍ୟାନନ୍ଦ ଏକକ ପଥିକ । ଯଦିଓ ୧୯୬୭ ମସିହାରୁ ୧୯୭୧ ମସିହା ପର୍ଯ୍ୟନ୍ତ ସେ ଦଳୀୟ ରାଜନୀତି ଭିତରେ ଥିଲେ ତଥାପି ଚିନ୍ତା ଓ ଚେତନାରେ ସେ ଏକାକୀ । ରାଜନୀତିରୁ ବିଦାୟ ନେଲା ପରେ ସେ ତପସ୍ୱୀର ଜୀବନ ଯାପନ କରୁଛନ୍ତି । ଧର୍ମାନୁରାଗ ଓ ସାହିତ୍ୟାନୁରାଗ ମଧ୍ୟରେ ତାଙ୍କର ଜୀବନ ଗତିଶୀଳ । ହୁଏତ ଏହି ଗତିରେ କ୍ଷିପ୍ରତା ନାହିଁ; ତଥାପି ଏଥିରେ ଅଛି ଏକ ସ୍ୱାଦ ଓ ସହୃଦୟତା ।

## ବିବାହ ବନ୍ଧନ ଓ ସଂସାର ଯାତ୍ରୀ :

ବିଦ୍ୟାଳୟ ଛାଡ଼ି ନିତ୍ୟାନନ୍ଦ ରାଜନୀତିରେ ଯୋଗ ଦେଇ ବାରମ୍ବାର କାରା ଜୀବନ ଯାପନ କଲେ । କାରାଗାର ହେଲା ତାଙ୍କର ତୀର୍ଥ କ୍ଷେତ୍ର ।

ସ୍ୱାଧୀନତା ଲାଭ ପର୍ଯ୍ୟନ୍ତ ତାଙ୍କର ଜୀବନ ଥିଲା ଘନଘଟାମୟ । ବ୍ରିଟିଶ ସରକାରଙ୍କର ତାଙ୍କ ପ୍ରତି ଥିଲା ତୀବ୍ର ଦୃଷ୍ଟି । ତାଙ୍କ ପାଖରେ ଦେଶର ମୁକ୍ତି ଯେତେବେଳେ ମୁଖ୍ୟ ପ୍ରଶ୍ନ ହୋଇ ଉଠିଥିଲା ସେତେବେଳେ ସେ ବିବାହ-ବନ୍ଧନକୁ ସ୍ୱାଗତ କରିଥାନ୍ତେ କିପରି ? ତେଣୁ ସେ ବିବାହ କଲେ ନାହିଁ । ଏଣେ ଯୌବନ କ୍ରମେ ହେଲା ଅତିକ୍ରାନ୍ତ । କଠୋର ସଂଯମ ଭିତରେ ତାଙ୍କ ଜୀବନର ଗତି । ସ୍ୱାଧୀନତା ପରେ ସେ ପୁଣି ଅନୁଭବ କଲେ ଦେଶ ଓ ଜାତିର ସମସ୍ୟା ତାଙ୍କ ପାଖରେ ଉତ୍କଟ । ରାଜନୀତିରେ ପ୍ରବଞ୍ଚନା ଓ ପ୍ରତାରଣା । ସର୍ବତ୍ର ଭୋଟବାଦର ପ୍ରବଳ ପ୍ରଭାବ । ଜଣ ଅବହେଳିତ । ପରାଧୀନ ଭାରତର ଶାସନ ତାନ୍ତ୍ରିକ ବ୍ୟବସ୍ଥା ସ୍ୱାଧୀନ ଭାରତରେ ପୂର୍ବପରି ପ୍ରଚଳିତ । ଭାରତର ମୁକ୍ତି ସଂଗ୍ରାମ ସହିତ ସେ ମଧ୍ୟ ଉତ୍କଳ ଜନନୀଙ୍କର ସ୍ୱତନ୍ତ୍ର କଳେବର ପାଇଁ ଥିଲେ ଉଦ୍ୟମରତ । ଯେତେବେଳେ ପୁରୀରେ ଜାତୀୟ କଂଗ୍ରେସର ଅଧିବେଶନ ହେବାକୁ ସ୍ଥିର ହେଲା ସେତେବେଳେ ନିତ୍ୟାନନ୍ଦ କଂଗ୍ରେସ ତ୍ୟାଗ କରି ଓଡ଼ିଆଭାଷୀ ଅଞ୍ଚଳମାନଙ୍କର ମିଶ୍ରଣ ପାଇଁ କାର୍ଯ୍ୟ କରିଥିଲେ ଓ ମିଦ୍‌ନାପୁରଠାରେ ଓଡ଼ନେଲ କମିଟି ଆଗରେ ସାକ୍ଷ୍ୟ ପ୍ରଦାନ କରିଥିଲେ । ସ୍ୱାଧୀନତା ପରେ ୧୯୫୬ ମସିହାରେ ଓଡ଼ିଆଭାଷୀ ଅଞ୍ଚଳର ଓଡ଼ିଶା ସହିତ ମିଶ୍ରଣ ପାଇଁ ଆନ୍ଦୋଳନ କରି କାରାବରଣ କରିଥିଲେ । ଏପରି ଏକ ସଂଗ୍ରାମୀ ପୁରୁଷଙ୍କର ବିବାହ କରିବାକୁ ସମୟ କେଉଁଠି ଥିଲା ? ତଥାପି ତପସ୍ୟାମଗ୍ନ ଶିବଙ୍କର ତପସ୍ୟା ଭଗ୍ନ ହେଲା । ୪୮ ବର୍ଷ ବୟସରେ ନିତ୍ୟାନନ୍ଦ ହରପ୍ରିୟା ଦେବୀଙ୍କର ପାଣିଗ୍ରହଣ କଲେ । ଏକକ ଜୀବନର ହେଲା ଅବସାନ । ଏହିଠାରୁ ଦାମ୍ପତ୍ୟ ଜୀବନର ହେଲା ଶୁଭାରମ୍ଭ । ପାରିବାରିକ ଜୀବନ-ଚର୍ଯ୍ୟା ମଧ୍ୟରେ ନିତ୍ୟାନନ୍ଦଙ୍କର ହେଲା ନୂତନ ଯାତ୍ରା । ସେ ଥିଲେ ପୁତ୍ର ଓ ନେତା, ହେଲେ ସ୍ୱାମୀ ଓ ପିତା ।

## ରାଜନୀତିରୁ ଧର୍ମର ପରିଧି :

ନିତ୍ୟାନନ୍ଦ ରାଜନୀତିର ରୁଦ୍ରକଠୋର ପଥରେ ଜୀବନ କଟାଇ ଥିଲେହେଁ ଧର୍ମର ମଧୁମୟ ଆହ୍ୱାନ ପ୍ରତି ଉଦାସୀନ ନଥିଲେ । ତାଙ୍କର ପିତାମହ ଥିଲେ ବୈଷ୍ଣବ । ତାଙ୍କର ଗୁରୁ ରାଧାରମଣ । ତତ୍‌ପୂର୍ବରୁ ତାଙ୍କର ପରିବାର ଥିଲେ ଶାକ୍ତ । ସେମାନେ କାଳୀପୂଜା କରୁଥିଲେ ।

ତାଙ୍କର ପିତା ଥିଲେ ଗୌଡ଼ୀୟ ବୈଷ୍ଣବ ଧର୍ମ ପ୍ରତି ଅନୁରକ୍ତ । ତାଙ୍କର ଗୁରୁ ଥିଲେ ବାବାଜୀ ରାମଦାସ । ନିତ୍ୟାନନ୍ଦ ମଧ୍ୟ ତାଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିଲେ । ସେ ବୈଷ୍ଣବ ହେଲେହେଁ ଅନ୍ୟ ଧର୍ମ ପ୍ରତି ଉଦାର । ଧର୍ମକୁ ନେଇ କୌଣସି ପ୍ରକାର ସଂକୀର୍ଣ୍ଣତା ତାଙ୍କୁ ସ୍ପର୍ଶ କରି ନାହିଁ । ଧର୍ମକୁ ସେ ସଂପ୍ରଦାୟ ଅର୍ଥରେ ବିଚାର କରନ୍ତି ନାହିଁ । ତାଙ୍କ ନିକଟରେ ଧର୍ମ ସଂପ୍ରଦାୟ ବିନିର୍ମୁକ୍ତ ଅମୃତମୟ ଭାବର ପ୍ରଚ୍ଛେଦକ । ରାଜନୀତି ଓ ସମାଜସେବା ମଧ୍ୟରେ ଥାଇ ସୁଦ୍ଧା ନିତ୍ୟାନନ୍ଦ ଧର୍ମ ପଥରୁ ବିଚଳ ହେଲେ ବିଚ୍ୟୁତ ନୁହନ୍ତି । ଧର୍ମର ମଧୁମୟ ଭାବହିଁ ତାଙ୍କୁ ଜୀବନ ପଥରେ ଆଗେଇ ଯିବାକୁ ଦେଇଛି ପ୍ରେରଣା । ନିତ୍ୟାନନ୍ଦ ଓ ସାନଭାଇ ଗୌର-ଚନ୍ଦ୍ର ପିତା ଲକ୍ଷ୍ମୀକାନ୍ତଙ୍କ ଦୃଷ୍ଟିରେ ଥିଲେ ଯଥାର୍ଥରେ ନିତାଇ-ଗୌର ।

## ସାହିତ୍ୟିକ ପ୍ରତିଭାର ଉନ୍ମେଷ ଓ ଉତ୍ତରଣ :

ନିତ୍ୟାନନ୍ଦ ସ୍ୱୟଂସିଦ୍ଧ । ଶିକ୍ଷାୟତନ ତାଙ୍କ ଜ୍ଞାନ ବିକାଶର ପରିସର ନଥିଲା । ଶିକ୍ଷାୟତନର ଉପାଧି ପ୍ରତି ସେ ଅନାସକ୍ତ । ଅଥଚ ଏକଲବ୍ୟ ପରି ସେ ହେଲେ ବିଦ୍ୟାବିନୋଦ । ଗୃହ ତାଙ୍କର ଶିକ୍ଷାଳୟ । ପିତା ତାଙ୍କର ଶିକ୍ଷକ । ପ୍ରକୃତି ଓ ଜଗତ ତାଙ୍କର ଖୋଲା ପୁସ୍ତକ । ସେହି ପୁସ୍ତକରେ ମଣିଷ ସମାଜର ସୁଖ ଦୁଃଖ, ଆଶା ନିରାଶା, ସଂଘାତ ସଂଘର୍ଷ ସବୁକିଛି ଉତ୍କୀର୍ଣ୍ଣ । ଜାତିର ଆତ୍ମା ସେଠି ମର୍ମରିତ । ଦେଶର ସଂସ୍କୃତି ଚର୍ଚ୍ଚିତ । ସ୍ରଷ୍ଟାର ମନ ଓ ହୃଦୟ ସେଠି ମିଶିଯାଇଛି ଜାତିର ମନ ଓ ହୃଦୟ ସହିତ । ସ୍ରଷ୍ଟାର ଅଶରୀରୀ ବ୍ୟକ୍ତିତ୍ୱ ଯେପରି ବିଚ୍ଛୁରିତ ହୋଇ ଯାଇଛି ସର୍ବତ୍ର । ତେଣୁ ତାଙ୍କର ସାହିତ୍ୟ ଓ ଜୀବନ ହୋଇଯାଇଛି ଏକ ଏବଂ ଅଭିନ୍ନ ।

ସାତବର୍ଷ ବୟସରୁ ତାଙ୍କର କବିତ୍ୱର ହେଲା ଆଦ୍ୟ ଉନ୍ମେଷ । ଏକଦା ସେ ଯାଇଥିଲେ ଯାତ୍ରା ଦେଖିବାକୁ । ପିଲାଦିନରୁ ସେ ଯାତ୍ରାପ୍ରିୟ । ଯାତ୍ରା ଭିତରେ ସେ ଉପଲବ୍‌ଧି କରିଛନ୍ତି ଓଡ଼ିଆ ଜାତିର ଆତ୍ମାକୁ । ନିଜେ ମଧ୍ୟ ସେ ଅଭିନୟ କରିଥିଲେ । ପିତାଙ୍କର ଅଭିନୟ କଳାକୁ ସେ ଗ୍ରହଣ କରି ନେଇଥିଲେ । ସେଦିନ ଯାତ୍ରା ଦେଖି ଫେରିଲା ପରେ ତାଙ୍କ ହୃଦୟରେ ଦେଖା ଦେଲା ଏକ ଗଭୀର ଆନ୍ଦୋଳନ । ମନର ମଧୁକୁ ମିଶାଇ ସେ

ରଚନା କଲେ୍  ଗୋଟିଏ କବିତା—'ସାବିତ୍ରୀ ଉପାଖ୍ୟାନ ।' କବିତାରେ ତାଙ୍କର ହେଲା ଆଦ୍ୟ ଶକ୍ତି ପରୀକ୍ଷା ।

ବୟସ ବଢ଼ିଛି । ଅଭିଜ୍ଞତା ଓ ଅନୁଭୂତି ମଧ୍ୟ ବଢ଼ିଛି । କୈଶୋରର କୌତୁକ ମଉଳି ଯାଇଛି ଜାତୀୟ ଜୀବନର ଅଭିଘାତରେ ।

ପ୍ରଥମ କାବ୍ୟ 'ସ୍ୱରାଜ୍ୟ ପାଇଁ' ୧୯୩୧ ମସିହାରେ ପ୍ରକାଶ ପାଇ ସୃଷ୍ଟି କଲା ଗଭୀର ଆଲୋଡ଼ନ । ବ୍ରିଟିଶ ସରକାରଙ୍କ ଦ୍ୱାରା ଏହା ହେଲା ବାଜ୍ୟାପ୍ତ । ଦ୍ୱିତୀୟ ପ୍ରକାଶିତ ଗଳ୍ପ 'ମାଉସୀ' ମଧ୍ୟ ସରକାରଙ୍କ ବିଷ-ଦୃଷ୍ଟିରେ ପଡ଼ି ପ୍ରଥମ ସୃଷ୍ଟିର ଦଶାବରଣ କଲା ।

ବାରମ୍ବାର ବ୍ରିଟିଶ ସରକାରଙ୍କ ବିଷଦୃଷ୍ଟିରେ ପଡ଼ି ମଧ୍ୟ ନିତ୍ୟାନନ୍ଦ ସାହିତ୍ୟ ସାଧନାରୁ ବିରତ ହୋଇ ନାହାନ୍ତି । ବରଂ ସାହିତ୍ୟ ପ୍ରତି ତାଙ୍କର ଅନୁରାଗ ବଢ଼ିଯାଇଛି । ପିତା କାନ୍ତକବିଙ୍କ ପୃଷ୍ଠପୋଷ-କତାରେ ସେ ୧୯୩୭ ମସିହାରେ ପ୍ରକାଶ କରିଛନ୍ତି 'ଡଗର' ପତ୍ରିକା । ରାଜନୈତିକ ସଂଘର୍ଷ ଭିତରେ ସେ 'ଡଗର'ର ଯତ୍ନ ନେଇପାରୁ ନ ଥିଲେ । ୧୯୪୮ ମସିହାରୁ ସେ 'ଡଗର'ର ସମ୍ପାଦନା ଓ ପରିଚାଳନା ନିଜ ହାତକୁ ନେଲେ । ସମ୍ପ୍ରତି 'ଡଗର' ଅର୍ଦ୍ଧଶତାବ୍ଦୀ ଅତିକ୍ରମ କରି ସାରିଲାଣି । ଓଡ଼ିଆ ସାହିତ୍ୟ ପତ୍ରିକା ଇତିହାସରେ ଏହା କମ୍ ବଡ଼ ଗୌରବର କଥା ନୁହେଁ ।

ଡଗରର ଗତି ଭଦ୍ରଖରୁ କଟକ । କଟକରୁ ଏହା ପୁଣି ଗତିକରିଛି ରାଜଧାନୀ ଭୁବନେଶ୍ୱର ।

ଡଗର ସୃଷ୍ଟି କରିଛି ଏକ ନୂତନ ଲେଖକ ମଣ୍ଡଳୀ । ଆଧୁନିକ ଓଡ଼ିଆ ସାହିତ୍ୟକୁ ଡଗରର ଅବଦାନ ଗୁରୁତ୍ୱପୂର୍ଣ୍ଣ । ରାଧାନାଥ ବିଶେଷାଙ୍କ, ଗଙ୍ଗାଧର ବିଶେଷାଙ୍କ, ଗଣକବି ବୈଷ୍ଣବ ପାଣି ବିଶେଷାଙ୍କ, ଆଧୁନିକ କବିତା ବିଶେଷାଙ୍କ, ରଜତ ଜୟନ୍ତୀ ବିଶେଷାଙ୍କ ପ୍ରଭୃତି ଡଗରର ଓଡ଼ିଆ ସାହିତ୍ୟକୁ ବିଶେଷ ଅବଦାନ । ହାସ୍ୟରସ ସୃଷ୍ଟିରେ ଏହାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ପିତା ଲକ୍ଷ୍ମୀକାନ୍ତଙ୍କ ହାସ୍ୟରସ ସୃଷ୍ଟି ହିଁ ଡଗରକୁ ଦେଇଛି ହାସ୍ୟରସର ମର୍ଯ୍ୟାଦା ।

'ମୁଁ କାହିଁକି ଲେଖେ'—ବହୁ ବିଶିଷ୍ଟ ଲେଖକମାନଙ୍କର ସାହିତ୍ୟ ସୃଷ୍ଟିର ରହସ୍ୟ ଉନ୍ମୋଚନର ଆତ୍ମିକ ଉଚ୍ଚାରଣ । ଏ କ୍ଷେତ୍ରରେ ଡଗରର ଭୂମିକା ସର୍ବପ୍ରଥମ ।

ଆଧୁନିକ କବିତା, ଗଳ୍ପ, ଉପନ୍ୟାସ, ସମାଲୋଚନା, ଭ୍ରମଣ କାହାଣୀ ଇତ୍ୟାଦିର ଝିଅବାରେଣୀ ଡ଼ଗର ।

ଡ଼ଗରର ସମ୍ପାଦକୀୟ ଉଚ୍ଚକୋଟିର ଚିନ୍ତା ଓ ଚେତନାର ପ୍ରତିଚ୍ଛବି ।

ରାଜନୈତିକ ସମାଲୋଚନାର ଏହା ମାର୍ମିକ ଅଭିବ୍ୟକ୍ତି ।

ରସଚକ୍ର, ଭଞ୍ଜପ୍ରଦୀପ, ଶଙ୍ଖ, ସହକାର ଓ ନବଭାରତ ପ୍ରଭୃତି ସାହିତ୍ୟ-ପତ୍ରିକା ତାଙ୍କୁ ସାହିତ୍ୟ ଜଗତରେ ପ୍ରତିଷ୍ଠା ପ୍ରଦାନ କରିଥିଲି । ସେ ମଧ୍ୟ କିଛୁକାଳ ଦୈନିକ ଆଶାର ସମ୍ପାଦନା କରିଥିଲେ ।

ଜଣେ ମରମୀ କବି ଭାବରେ ନିତ୍ୟାନନ୍ଦ ସୁପରିଚିତ । ଜାତୀୟତାବାଦୀ ଦୃଷ୍ଟିକୋଣର ଏକ ମନୋଜ୍ଞ ସଂକଳନ 'ପାଞ୍ଚଜନ୍ୟ' । ରାଜନୈତିକ ନେତା-ମାନଙ୍କର ଗୌରବମୟ କାର୍ଯ୍ୟକଳାପର କାବ୍ୟିକ ଅଭିବ୍ୟକ୍ତି 'କାଳରଙ୍ଗ' । ମହାତ୍ମାଗାନ୍ଧିଙ୍କର Indian Home ର କାବ୍ୟିକ ଅନୁବାଦ 'ସ୍ୱରାଜ୍ୟ ସଂହିତା' । ବିନୋବା ଭାବେଙ୍କର ଭୂମି ସଂସ୍କାର ଆନ୍ଦୋଳନର କାବ୍ୟିକ ପ୍ରଶଂସା 'ଭୂ ମାହାତ୍ମ୍ୟ' । ମହର୍ଷି କମ୍ବନଙ୍କ ରାମାୟଣର ଅଯୋଧ୍ୟାକାଣ୍ଡର ଅନୁବାଦ 'କମ୍ବନ ରାମାୟଣ' । ପ୍ରେମମୂଳକ ଗୀତିକବିତାର ମନୋଜ୍ଞ ସମାହାର 'ମରମ' । ଲବଣ ସତ୍ୟାଗ୍ରହ ଭିତ୍ତିଭୂମି ଉପରେ ରଚିତ 'ସ୍ୱରାଜ ପାଲ୍' ।

ନିତ୍ୟାନନ୍ଦ ଜଣେ କବି କେବଳ ନୁହନ୍ତି; ସେ ମଧ୍ୟ ଜଣେ ନାଟ୍ୟକାର । ହରିଜନମାନଙ୍କର ଅଧିକାର ଓ ଅସ୍ପୃଶ୍ୟତା ନିବାରଣକୁ କେନ୍ଦ୍ରକରି 'ହରିଜନ ମନ୍ଦିର ପ୍ରବେଶ' ତାଙ୍କର ଏକ ଉଲ୍ଲେଖଯୋଗ୍ୟ ନାଟକ । 'ସଂଜୀବନୀ' ଏକ ଭିନ୍ନ ସ୍ୱାଦର ନାଟକ । ମୃତ ବ୍ୟକ୍ତିକୁ ବଞ୍ଚାଇବା ପାଇଁ ଏକ ଔଷଧ ଉଦ୍‌ଭାବନ ଏହି ନାଟକର ବାଣୀ । 'ଯୁଗାନ୍ତର' ଏକ ପୌରାଣିକ ନାଟକ । କର୍ଣ୍ଣଙ୍କ ଜୀବନ ଆଧାରରେ ଏହା

ରଚିତ । କଳାପାହାଡ଼ର ଓଡ଼ିଶା ଆକ୍ରମଣକୁ କେନ୍ଦ୍ର କରି ରଚିତ 'ସୁଦଧର୍ମ' ଐତିହାସିକ ନାଟକ ।

ଜଣେ ମନସ୍ତାତ୍ତ୍ୱିକ ଗାଳ୍ପିକ ଭାବରେ ଶ୍ରୀମହାପାତ୍ର ଓଡ଼ିଆ ସାହିତ୍ୟରେ ସୁପ୍ରତିଷ୍ଠିତ । 'ଏଗାରଟି' ଏଗାର ଗୋଟି ଗଳ୍ପର ସମାହାର । ଏଥିରୁ କେତେକ ଗଳ୍ପ ଅନୂଦିତ ହୋଇ ଇଂରାଜୀ ଓ ଫରାସୀ ସାହିତ୍ୟରେ ପ୍ରକାଶିତ । 'କ୍ଷଣିକା', 'ଧଳାଗାର କଳାଟାର', ଆଖି ନାହିଁ କାନ ନାହିଁ' ଆଦି ତାଙ୍କର ଗଳ୍ପ ପୁସ୍ତକ । ଖଣ୍ଡିତ ଜୀବନର ବହୁମୁଖୀ ଦିଗକୁ ସେ ଗଳ୍ପମାନଙ୍କରେ ପ୍ରକାଶ କରିଅଛନ୍ତି ।

ଔପନ୍ୟାସିକ ନିତ୍ୟାନନ୍ଦ ଉଚ୍ଚମାନର ଅଧିକାରୀ । 'ଭୁଲ' ଉପନ୍ୟାସ ଜନୈକା ବିବାହିତା ନାରୀର ଜୀବନ ଚିତ୍ରକୁ ନେଇ ରଚିତ । ସ୍ୱାମୀଙ୍କ ସାହିତ୍ୟିକ ବନ୍ଧୁଙ୍କ ପ୍ରତି ପ୍ରେମ ତାକୁ ଭୁଲ ମାର୍ଗରେ ନେଇଯାଇଛି ମାତ୍ର ପରିଣତିରେ ସେଥିରୁ ସେ ରକ୍ଷା ପାଇ ତାର ନାରୀଧର୍ମକୁ ପ୍ରତିଷ୍ଠା ଦେଇ ପାରିଛି । ତିନିଜଣ ନାୟକ ନିଜ ନିଜର ପ୍ରେମାନୁଭୂତିକୁ ଭିନ୍ନ ଭିନ୍ନ ପରିବେଶରେ ବ୍ୟକ୍ତ କରିଛନ୍ତି । 'ଜୀଅନ୍ତା ମଣିଷ' ଉପନ୍ୟାସରେ ଜଣେ ଦେହର ଆନନ୍ଦ ପାଇଁ ପ୍ରେମକୁ ଗୁରୁତ୍ୱ ଦେଉଥିଲା ବେଳେ ଅନ୍ୟ ଜଣେ ମନ ଏବଂ ଆଉ ଜଣେ ହୃଦୟ ଉପରେ ଗୁରୁତ୍ୱ ଦେଇଛି । 'ଜଳନ୍ତା ନିଆଁ' ଜନୈକା ବାଳିକାର ବାଲ୍ୟାବସ୍ଥାରୁ ଯୌବନ ପର୍ଯ୍ୟନ୍ତ ଯୌନ ଓ ପ୍ରେମ କାହାଣୀର ଏକ ଜୀବନ୍ତ ଭାଷ୍ୟ । ଅବଶେଷରେ ଫ୍ରଏଡ଼ଙ୍କ ଯୌନତତ୍ତ୍ୱକୁ ଅସ୍ୱୀକାର କରାଯାଇଛି । ଜୀବନର ସୁଖ ସନ୍ଧାନ କରୁଥିବା ଜନୈକ ବ୍ୟକ୍ତିର ଏକ ଆଦର୍ଶମୟ ରୂପ 'ସୁଖର ସନ୍ଧାନେ' ଉପନ୍ୟାସ । 'ଜୀବନର ଲକ୍ଷ୍ୟ' ଉପନ୍ୟାସ ଜନୈକ ଯୁବକର ବିପର୍ଯ୍ୟସ୍ତ ପ୍ରେମ ଓ ବିଭିନ୍ନ ଅନୁଭୂତି ମଧ୍ୟ ଦେଇ ଅବଶେଷରେ ଚୀନ ସମ୍ରାଟ ସେ ଓ୍ୱାଙ୍ଗ୍ ସିଙ୍କ ସ୍ମରିତ ସାହାଯ୍ୟରେ ଜୀବନର ପ୍ରକୃତ ଅର୍ଥ ଉପଲବ୍ଧିକୁ ମନୋଜ୍ଞ ଭାବରେ ପ୍ରକାଶ କରିଥାଏ । 'ଖସଡ଼ା ବାଟ' ଜନୈକା ଯୁବତୀର ପ୍ରେମକାହାଣୀକୁ ଆଧାର କରି ରଚିତ । ସେହି ଯୁବତୀର ଆନ୍ତରିକତାହିଁ ଜନୈକ ଦୋର୍ଥ-ବିତଙ୍କୁ ମାନବିକ ପ୍ରେମର ମହତ୍ତ୍ୱକୁ ଉପଲବ୍ଧି କରିବେଧେ କରିବା ପାଇଁ ଦେଇଛି ପ୍ରେରଣା ।

'ହରିଜମାଟି' ଏକ ରାଜନୀତିକ-ସାମାଜିକ ଉପନ୍ୟାସ । ଲବଣ ସତ୍ୟାଗ୍ରହ ଭିତ୍ତି ଭୂମି ଉପରେ ଏହା ରଚିତ । ଗ୍ରାମ୍ୟ ଜୀବନର ଏହା ଏକ ମାର୍ମିକ ଆଲେଖ୍ୟ । ୧୯୪୨ ମସିହାର ସତ୍ୟାଗ୍ରହ ଅବଲମ୍ବନରେ 'ଭଙ୍ଗାହାଡ଼' ଉପନ୍ୟାସ ପରିକଳ୍ପିତ । 'ଘରଡ଼ିହ' ସ୍ୱାଧୀନତା ପରବର୍ତ୍ତୀ ଭାରତୀୟ ସମାଜର ମନୋଜ୍ଞ ରୂପଚିତ୍ର । କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଦ୍ୱାରା ଏହା ପୁରସ୍କୃତ ।

'ଇନ୍ଦ୍ର ଓ ଇନ୍ଦ୍ରାଣୀ' ଏକ ନାଟକୀୟ ଉପନ୍ୟାସ । ଇନ୍ଦ୍ର ଓ ତାଙ୍କର ପତ୍ନୀ ଶଚୀଙ୍କୁ ଆଧାର କରି ଏହା ରଚିତ ।

'ଶାନ୍ତା ଭଡ଼ୋରିଆଙ୍କ ରହସ୍ୟ' ଏକ ଇଂରାଜୀ ଉପନ୍ୟାସର ଅନୁବାଦ । 'ଫିର ଭି ଯେ କହାନୀ ସଚ୍ଚି ହୈ' ନିତ୍ୟାନନ୍ଦଙ୍କର ଏକ ହିନ୍ଦୀ ଉପନ୍ୟାସ ।

ବୈଦିକ ଯୁଗରୁ ବ୍ରିଟିଶ ରାଜତ୍ୱ ପର୍ଯ୍ୟନ୍ତ କେତେକ ସନ୍ଥ ଓ ବୀରମାନଙ୍କର ଜୀବନୀକୁ ନେଇ ରଚିତ 'ଭାରତ ଭାଗ୍ୟ ବିଧାତା ।' ଶ୍ରୀଚୈତନ୍ୟଙ୍କ ସମସାମୟିକ ଠାକୁର ହରିଦାସଙ୍କ ଜୀବନୀକୁ ଉପନ୍ୟାସ ଶୈଳୀରେ ରଚନା କରିଛନ୍ତି 'ନାହଂ ତିଷ୍ଠାମି ବୈକୁଣ୍ଠେ ।'

'ଭାରତୀୟ ସଂସ୍କୃତି' ତାଙ୍କର ଏକ ପ୍ରବନ୍ଧ ପୁସ୍ତକ ।

'ପଦ୍ମ ଓ ପ୍ରତିମା' ନିତ୍ୟାନନ୍ଦଙ୍କର ଏକ ଚିନ୍ତାମୂଳକ ରମ୍ୟରଚନା ସଂକଳନ ।

ପରିବାରରୁ ସମାଜ, ସମାଜରୁ ରାଜନୀତି, ରାଜନୀତିରୁ ମଣିଷର ମନ ଓ ହୃଦୟକୁ ନିତ୍ୟାନନ୍ଦଙ୍କ ସ୍ରଷ୍ଟା-ପୁରୁଷ ଗତି କରିଛି । ଜଣେ ଆଦର୍ଶ ସମାଜସେବୀ ଭାବରେ ସେ ଯେପରି ସୁପରିଚିତ, ସେହିପରି ଜଣେ ସ୍ୱାଧୀନତା ସଂଗ୍ରାମୀ, ରାଜନୀତିକ ନେତା, ସଫଳ ବିଧାୟକ ଭାବରେ ମଧ୍ୟ ସୁଖ୍ୟାତ । ଏସବୁ ସତ୍ତ୍ୱେ ସେ ଜଣେ ନିଷ୍ଠାପର ସାହିତ୍ୟିକ । ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ଅସମ୍ଭବ କୃତିତ୍ୱ ଅର୍ଜନ କରି ଅଛନ୍ତି । ମଣିଷର ମନ ଓ ହୃଦୟକୁ ସେ ଉପଲବ୍ଧି କରିଛନ୍ତି । ବାସ୍ତବର ଧରାତଳରୁ ଆଦର୍ଶବାଦୀ ମଣିଷକୁ ସେ ଉନ୍ମୋଚନ କରି ଆଣିଛନ୍ତି । ନର ନାରୀଙ୍କର ଯୌନ-ଜିଜ୍ଞାସା ଭିତରୁ ପ୍ରେମମୟ ସ୍ୱରୂପକୁ ଉଦ୍‌ଘାଟନ

କରନ୍ତି । ତେଣୁ ତାଙ୍କର ସାହିତ୍ୟ ହୋଇଛି ସ୍ୱାଭିମାନର ସାହିତ୍ୟ, ମଣିଷ ଜୀବନର ଚିରନ୍ତନ ଭାଷ୍ୟ ।

ନିତ୍ୟାନନ୍ଦ ବାସ୍ତବିକ ଚିଦାନନ୍ଦ ।

ଏବେ ମଧ୍ୟ ସେ ସାହିତ୍ୟ ସାଧନାରେ ବ୍ରତୀ ।

ନିତ୍ୟାନନ୍ଦଙ୍କ ସାହିତ୍ୟ ଓ ତାଙ୍କର ଜୀବନ ଏକ ଏବଂ ଅଭିନ୍ନ ।

ଜାତୀୟ ଜୀବନର ଯଜ୍ଞବେଦୀରେ ନିତ୍ୟାନନ୍ଦଙ୍କ ସାହିତ୍ୟ ମୂର୍ଦ୍ଧାଭିଷିକ୍ତ ।

ଅସୀମ ଶକ୍ତିଧର ଏହି ସାହିତ୍ୟିକଙ୍କର ପ୍ରତିଭା ଚିର ଭାସ୍ୱର ।

ଓଡ଼ିଆ ଜାତିର ହୃଦୟ ବେଦୀରେ ସେ ନିତ୍ୟ ବନ୍ଦିତ ।

ନିତ୍ୟାନନ୍ଦ ପ୍ରକୃତରେ ନିତ୍ୟାନନ୍ଦ । ବ୍ୟଥା - ବେଦନାରେ ଚିର ଅବିଚଳ ।

ତପସ୍ୱୀ ନିତ୍ୟାନନ୍ଦଙ୍କର ତପସ୍ୟାର ଶେଷ ନାହିଁ ।

ତାଙ୍କ ତପସ୍ୟାର ଜୟ ହେଉ । ସୁଖ ଓ ଆନନ୍ଦର ସନ୍ଧାନ ମହିମାମୟ ହେଉ ।

ହିଡ଼ମାଟି ହିଡ଼ରେ ପଡ଼ୁ । ଭଙ୍ଗା ହାଡ଼ ଯୋଡ଼ି ହେଉ । ଘରଡ଼ିହ ହସିଉଠୁ ।

ଜୀବନର ଲକ୍ଷ୍ୟ ହେଉ ମଧୁମୟ । ଜୀଅନ୍ତା ମଣିଷ ପାଉ ଅମୃତର ସ୍ୱାଦ ।

ଖସଡ଼ା ବାଟ ହେଉ ଶୁଦ୍ଧ ଓ ସୁନ୍ଦର । ଜଳନ୍ତା ନିଆଁରୁ ଶୁଦ୍ଧ ସୁବର୍ଣ୍ଣ ଉଙ୍କିଉଠୁ ।



# ଶ୍ରୀଯୁକ୍ତ କୁଞ୍ଜବିହାରୀ ମେହେର

**ଶ୍ରୀ ସୁବ୍ରତ ମହାନ୍ତି**

ଏକ ପ୍ରଚଣ୍ଡ ପ୍ରତିଭାକୁ କେତେ ଫର୍ଦ୍ଦ ଅଲେଖା କାଗଜ ଦେହରେ ଅମର କରି ରଖିବାରେ ଥାଏ ଅସରନ୍ତି ଆନନ୍ଦ । ସେମିତି ଏକ ପ୍ରତିଭା 'କୁଞ୍ଜବିହାରୀ', ଯାହାଙ୍କ ସ୍ମୃତିକୁ ସାଇତି ରଖିବା ଉଚିତ ।

**ଜନ୍ମ ବୃତ୍ତାନ୍ତ :**

୧୯୨୮ ମସିହା ମାର୍ଗଶିର ମାସ କୃଷ୍ଣପକ୍ଷ ପ୍ରତିପଦା ତା ୨୦।୧୧।୨୮ ଗୁରୁବାର ଦିନ, ଓଡ଼ିଶାର ସମ୍ବଲପୁର ଜିଲ୍ଲା ବରଗଡ଼ ଥାନା ଅନ୍ତର୍ଗତ ବୁଢ଼ାପାଲି ଗ୍ରାମରେ କୁଞ୍ଜବିହାରୀଙ୍କ ଜନ୍ମ । ପିତା ଶ୍ରୀ ବ୍ରଜମୋହନ ମେହେର ଏବଂ ମାତା ଶ୍ରୀମତୀ କ୍ଷୀରବତୀ ଦେବୀ ଦୀର୍ଘ ଦଶ ବର୍ଷ ପର୍ଯ୍ୟନ୍ତ ସନ୍ତାନ ଅଭିଳାଷ ନିମିତ୍ତ ଭଗବାନ ନାରାୟଣ ଏବଂ ଶିବଙ୍କୁ ପୂଜା ଆରାଧନା କରି ଲାଭ କରିଥିଲେ ତାଙ୍କୁ ।

ସେ ସମୟରେ ତାଙ୍କ ପିତା ପାରମ୍ପରିକ କୌଳିକ ବୃତ୍ତି ବସ୍ତ୍ର ବୟନ କରି ବରଗଡ଼, ବରପାଲି, ସମ୍ବଲପୁର ଇତ୍ୟାଦି ସ୍ଥାନରେ ସୁନାମ ଅର୍ଜନ କରିଥିଲେ । ତାଙ୍କର କୋଳରେ ପ୍ରତିପାଳିତ ହୋଇଥିଲେ କୁଞ୍ଜବିହାରୀ ।

ଶିଶୁ କୁଞ୍ଜବିହାରୀଙ୍କ ବିଦ୍ୟାରମ୍ଭ ହୁଏ ଜଗନ୍ନାଥ ମନ୍ଦିର ପୂଜାରୀ ମଦନ ପୂଜାରୀ ଅବଧାନଙ୍କ ଗୃହରୁ । ଅବଧାନଙ୍କ ଗୃହରେ ଦୁଇବର୍ଷ ଅଧ୍ୟୟନ କରିବା ପରେ ବୁଢ଼ାପାଲି ଠାରେ ଏକ ସ୍କୁଲ ହେବାରୁ ସେଠାରେ ଆଉ ଦୁଇବର୍ଷ ପାଠ ପଢ଼ି ତାଙ୍କର ପାଠପଢ଼ା ବନ୍ଦ ହେଲା । କାରଣ ସେତେ-

ବେଳେ ଉଚ୍ଚଶିକ୍ଷା ପାଇଁ ବରଗଡ଼ ଯିବାକୁ ପଡ଼ୁଥିଲା । କିନ୍ତୁ କୁଞ୍ଜବିହାରୀଙ୍କ ପିତାମାତା ତାଙ୍କୁ ଏତେଦୂର ଯାଇ ପାଠ ପଢ଼ିବାକୁ ଅନୁମତି ଦେଲେ ନାହିଁ । ତେଣୁ ସେ ଉଚ୍ଚଶିକ୍ଷାରୁ ବଞ୍ଚିତ ହୋଇ ବାଲ୍ୟାବସ୍ଥାରୁ ନିଜର କୌଳିକ ବୃତ୍ତି ବାନ୍ଧ ଓ ବୟନ ଶିଳ୍ପରେ ନିୟୋଜିତ ହେଲେ ଓ ତା ସଙ୍ଗେ ସଙ୍ଗେ ପିତା ବ୍ରଜମୋହନଙ୍କ ଅର୍ଜିତ ଗୃହଜମିର ମଧ୍ୟ ଦେଖାଶୁଣା କଲେ ।

ସେ ସମୟରେ ୧୨ ନମ୍ବର, ୧୭ ନମ୍ବର ଇତ୍ୟାଦି ମୋଟା ଧରଣର ସୂତା ମିଳୁଥିଲା । ସେଥିରେ ବଉଳମାଳିଆ, କନକପର, ଚନ୍ଦନକୋବ, ଦୁଇ ଫୁଲିଆ, ପାଞ୍ଚ ଫୁଲିଆ, ଦଶ ଫୁଲିଆ ଇତ୍ୟାଦି ପାରମ୍ପାରିକ ନମୁନାଗୁଡ଼ିକ ବୁଣିବା ପିତାଙ୍କ ପାଖରୁ ସେ ଶିକ୍ଷାଲାଭ କଲେ ।

ବୁଣିବା ସମୟରେ ତାଙ୍କ ହାତର ଅଙ୍ଗୁଳି ଚାଳନା, ପାଦର ପରିଚାଳନା ଓ କାମ କରିବାର ପ୍ରଣାଳୀ ଦେଖି ବହୁତ ଖୁସି ହେଉଥିଲେ ପିତା ବ୍ରଜମୋହନ । ଆନନ୍ଦରେ ଭରି ଉଠୁଥିଲା ତାଙ୍କର ମନ ପୁଅର ସଫେଇ ଓ ସୁନ୍ଦର ନମୁନାଗୁଡ଼ିକୁ ଦେଖି । ୧୪ ବର୍ଷ ବୟସ୍କ ମେହେରଙ୍କ ହାତବୁଣା କପଟା ଶାଢ଼ି ଏବଂ ନୂତନ ନମୁନାଗୁଡ଼ିକୁ ଲୋକଙ୍କୁ ଦେଖାଇ ସେ କହୁଥିଲେ "୧୪ ବର୍ଷ ବୟସର ଆମ ପିଲାର କାମ କେମିତି ହେଉଛି ଦେଖ ।"

କୁଞ୍ଜବିହାରୀଙ୍କ ବଡ଼ବାପା ଭଗୀରଥି ମେହେର ଜଣେ ବରିଷ୍ଠ ବୁଣାକାର ଥିବେ ଏବଂ ତାଙ୍କର ପୁଅ ଦଇତାରି ମେହେର ମଧ୍ୟ ତାଙ୍କର କାରିଗରୀ କାମପାଇଁ ସେତେବେଳେ ବରପାଲି ଅଞ୍ଚଳରେ ସୁପରିଚିତ ଥିଲେ । ଏମାନଙ୍କ ପ୍ରଭାବ ପଡ଼ୁଥିଲା କୁଞ୍ଜବିହାରୀଙ୍କ ଉପରେ ।

ସମୟକ୍ରମେ ସେତେବେଳର ପରମ୍ପରା ଅନୁଯାୟୀ ଜୀକପାଲି ନିବାସୀ ଧନେଶ୍ୱର ମେହେର (ମେହେରଙ୍କ ବଡ଼ମାମୁଁ)ଙ୍କ ଦ୍ୱିତୀୟା କନ୍ୟା 'ମାଳବତୀ' ସଙ୍ଗେ ତାଙ୍କର ବାଲ୍ୟବିବାହ ହୋଇଗଲା । ଏହି ଦିନରୁ ଆରମ୍ଭ ହେଲା ପାରିବାରିକ ଜୀବନ ।

## ବଂଶ ପରମ୍ପରା :

ମେହେରଙ୍କ ପୂର୍ବପୁରୁଷମାନଙ୍କ ନିକଟରେ ଅନ୍ୟ ଅପେକ୍ଷା ବସ୍ତ୍ରର ସମ୍ମାନ ଅଧିକ ଥିଲା ।

ସେମାନେ ତୁଳା ସଂଗ୍ରହ କରି 'ତାକୁଡ଼ି' ସାହାଯ୍ୟରେ ସୂତା ତିଆରି କରିବାରେ ମନୋନିବେଶ କରୁଥିଲେ ଓ ସେହି ସୂତାରୁ ବସ୍ତ୍ର ତିଆରି କରିବାର ସରଞ୍ଜାମ ମଙ୍ଗା (ତନ୍ତ) ବଏ, ପାନିଆ, ଫନି ଇତ୍ୟାଦି ତିଆରି କଲେ । ଏହି ସୂତାରେ ଭାତର ମଣ୍ଡ ଲେପନ କରି ତାନି ଓ ବୁଣା ସୂତା ଭିନ୍ନ ପ୍ରକାରେ ପ୍ରସ୍ତୁତ କଲେ । ବୃକ୍ଷ ଲତାର ଛାଲି ଓ ଚେରରୁ ରସ ସଂଗ୍ରହ କରି ଏହି ରସରେ ସୂତାକୁ ବୁଡ଼ାଇ ରଙ୍ଗ କରିବାର ପ୍ରଣାଳୀ ସେମାନେ ଉଦ୍‌ଭାବନ କଲେ । ହଳଦୀକୁ ବାଟି ହଳଦୀ ରଙ୍ଗ, ଆଁଛୁ ଗଛର ଛାଲି ଓ ଚେରରୁ ନାଲିରଙ୍ଗ, ଗୁଳୁଣ୍ଡା, ହରଡ଼, ବାହାଡ଼ା ଇତ୍ୟାଦି ଗଛର ଫଳରୁ କଳାରଙ୍ଗ ଆବିଷ୍କାର କଲେ । ସେ ସମୟରେ ପ୍ରଥମେ ମୋଟା ସୂତାରୁ ବହୁତ ଅଣଓସାରିଆ କପଡ଼ା ବୁଣି ମହିଳାମାନେ ପିନ୍ଧୁଥିଲେ । ପରେ ତାକୁ କପଟା ବୋଲି ନାମ ଦେଲେ । କପାରୁ ତିଆରି ହୋଇଥିବାରୁ ତାହାକୁ କପଟା ବୋଲି ନାମ ଦିଆଯାଇଥିବା ଅନୁମେୟ । ଏହି ବୟନର ପ୍ରଣାଳୀ ହେଉଛି କପଟାକୁ ଚଉଡ଼ା ଅନୁପାତରେ ଧୂରୁଷପିନ୍ଧା କରିଆ ମାପରେ ଦୁଇ ପଟରେ ରଶିଦ୍ୱାରା ବନ୍ଧନ କରି, ତାକୁ ଆଁଛୁ ଗଛର ରସରେ ବୁଡାଇ ଦୁଇଧଡ଼ିକୁ ଲାଲରଙ୍ଗ କରୁଥିଲେ । ସେହି ଆଁଛୁ ଗଛର ରସରୁ ଯେଉଁ ରଙ୍ଗ ହେଉଥିଲା ଜବାକୁସୁମ ପରି ଦେଖା-ଯାଉଥିଲା । ପ୍ରଥମେ କପଡ଼ା ବୁଣା ସରିବା ପରେ ଭକ୍ତିରେ ଇଷ୍ଟ-ଦେବଙ୍କୁ ସମର୍ପଣ କରିବା ଥିଲା ପାରମ୍ପରିକ ରୀତି । ଏ ଶାଢ଼ୀକୁ 'ମନ୍ଦାର ଫୁଲିଆ ଶାଢ଼ୀ' କୁହାଯାଉଥିଲା ଏବଂ ଏହା ବାନ୍ଧକାମର ପ୍ରଥମ ଶାଢ଼ୀ ବୋଲି ଜଣାଯାଇଥାଏ । ରଶିଦ୍ୱାରା ବନ୍ଧନ କରାହୋଇ ବୟନ ହୋଇ-ଥିବାରୁ ଏହାର ନାମ ବାନ୍ଧଶାଢ଼ୀ । କଥିତ ଅଛି ଥରେ ଇଷ୍ଟଦେବଙ୍କ ଭକ୍ତିରେ ଆପ୍ୟାୟିତ ହୋଇ କହିଲେ, ତୁମେ ସମସ୍ତେ ମୋର ସନ୍ତାନ; ମୋ ଅଙ୍ଗରୁ ତୁମେ ଜାତ ହୋଇଛ—ତେଣୁ ତୁମେ ଦେବାଙ୍ଗ ନାମରେ ସବୁ ଯୁଗରେ ଖ୍ୟାତି ଅର୍ଜନ କର । ସେ ସମୟରୁ ମେହେରଙ୍କ ବଂଶଧର ମାନେ 'ଦେବାଙ୍ଗ' ନାମରେ ପରିଚିତ ହୋଇଛନ୍ତି ।

ଆଚ୍ଛୁଁ ଗଛର ଗଣ୍ଡି ଏବଂ ଚେରରୁ ପ୍ରସ୍ତୁତ ରଙ୍ଗକୁ ସୂତାରେ ଦେବାପାଇଁ ସେତେବେଳେ ଅନେକ କଷ୍ଟ ସ୍ୱୀକାର କରିବାକୁ ପଡ଼ୁଥିଲା । ପ୍ରଥମେ ସୂତାକୁ ଗରମ ପାଣିରେ ବୁଡ଼ାଇ ସଫା କରିବାକୁ ପଡ଼ୁଥିଲା । ତାପରେ ଆଚ୍ଛୁଁ ଗଛର ଚେର ଓ ଗଣ୍ଡିକୁ ଗୁଣ୍ଡ କରି ଫୁଟନ୍ତାପାଣିରେ ଗୋଳିବାକୁ ପଡ଼ୁଥିଲା । ସଫା ହୋଇଥିବା ସୂତାକୁ ଏହି ରଙ୍ଗପାଣିରେ ବୁଡ଼ାଇ ବାହାରକୁ ଆଣି ପ୍ରଚଣ୍ଡ ଖରାରେ ଶୁଖାଇବାକୁ ପଡ଼ୁଥିଲା । ପରେ ଦ୍ୱିତୀୟବାର ପାଇଁ ରଙ୍ଗପାଣିରେ ବୁଡ଼ାଇ ଖରାରେ ଶୁଖାଇବାକୁ ପଡ଼ୁଥିଲା । ଏମିତି ପାଞ୍ଚ ନଅ ଥର କରିବା ପରେ ସୂତାରେ ଠିକ୍ ରଙ୍ଗ ବସୁଥିଲା, ଥରେ ରଙ୍ଗ କଲେ ତାହାକୁ 'ବୁଲେ' କହୁଥିଲେ । ଏମିତି ବୋଳ ବୋଳ କରି ରଙ୍ଗ କରୁଥିବାରୁ ଏହି ଜାତିକୁ ବୋଲିଆ ବୋଲି କହିଲେ । କାଳକ୍ରମେ ଭାଷାର ପରିବର୍ତ୍ତନ ହୋଇ ସେମାନେ 'ଭୁଲିଆ' ଜାତି ନାମରେ ନାମିତ ହେଲେ ।

ଏମାନେ ଭାରତର ବିଭିନ୍ନ ସ୍ଥାନ ଭ୍ରମଣ ଉଦ୍ଦେଶ୍ୟରେ ତଥା ତୀର୍ଥଦର୍ଶନ କରିବା ସକାଶେ ଯାଇ ସେଠାରେ ବସବାସ କରୁଛନ୍ତି । ଦିଲ୍ଲୀରେ ବାସ କରୁଥିବା 'ଭୁଲିଆ'ମାନେ ପୂର୍ଣ୍ଣମୀ ଦିନ ଏକ ସଭା କରୁଥିଲେ । ସେଠି ତାଙ୍କର ସୁଖ, ଦୁଃଖ ସବୁ ଆଲୋଚନା ହେଉଥିଲା । ଯାହାର କିଛି ଅଭାବ ଥାଏ ତାଙ୍କୁ ସମସ୍ତଙ୍କ ପାଖରୁ ଚାନ୍ଦା ସଂଗ୍ରହ କରି ପ୍ରଦାନ କରାଯାଉଥିଲା । ସେମାନଙ୍କ ଜୀବନ ଥିଲା ଅତି ସରଳ । ଦେବଦେବୀଙ୍କ ଉପରେ ଥିଲା ପ୍ରଗାଢ଼ ଭକ୍ତି ଓ ବିଶ୍ୱାସ ।

କୁଞ୍ଜବିହାରୀଙ୍କ ପିତା ବ୍ରଜମୋହନ ସ୍ତ୍ରୀ ଲୋକମାନଙ୍କ ପାଇଁ ସୁନ୍ଦର ସୁନ୍ଦର ଶାଢ଼ୀ ବୁଣି ଏତେ ଲୋକପ୍ରିୟ ହୋଇଥିଲେ ଯେ ସେ ଅଞ୍ଚଳର ସ୍ତ୍ରୀ ଲୋକମାନଙ୍କର ଢଗଢମାଳି ଥିଲା—

"ବରଗ ଭୁଲିଆର କପଡ଼ା ପଟେ
ଦୁଇ ପଟାରେ ମାଇଝୀ ଗୋଟେ ।"

କେବଳ ଗାଉଁଲି ସ୍ତ୍ରୀ ଲୋକଙ୍କ ପାଖରେ ନୁହେଁ, ବ୍ରଜମୋହନଙ୍କ ହାତବୁଣା ଶାଢ଼ୀ ବରପାଲିର ରଜା ଘରେ, ବିଜେପୁରର ଜମିଦାର ଘରେ, ଖରମୁଣ୍ଡାର ଗୌନ୍ତିଆ ଘରେ ଏବଂ ଅନ୍ୟ ବଡ଼ ବଡ଼ ଗୌନ୍ତିଆ ଘର ମାନଙ୍କରେ ମଧ୍ୟ ଆଦର ଲାଭ କରିଥିଲା ।

ସେହି ସମୟରେ ଆଜିକାଲି ପରି ସୋଡ଼ାଖାରି, ସାବୁନ ଇତ୍ୟାଦିର ପ୍ରଚଳନ ନଥିଲା । ଲୁଗା ସଫା କରିବା ପାଇଁ କାଠ ପାଉଁଶକୁ ଫୁଟନ୍ତା ପାଣିରେ ଗୋଳ ପିନ୍ଧା ହେଉଥିବା କରିଆ (ଗୁଦରି) ଓ କପଡ଼ା (ଶାଢ଼ୀ) ଗୁଡ଼ିକୁ ସିଝାଇ ବନ୍ଧ କମ୍ବା ପୋଖରୀ ପଥର ଉପରେ କଚାଡ଼ି କଚାଡ଼ି ସଫା କରୁଥିଲେ । ସାଧାରଣତଃ ସ୍ତ୍ରୀ ଲୋକମାନେ ଦୁଇଖଣ୍ଡ କପଡ଼ା ଓ ଗୋଟିଏ ଅନନ୍ତ କପଡ଼ା ରଖୁଥିଲେ । ପୁରୁଷମାନେ ଦୁଇଖଣ୍ଡ କରିଆରେ ଚଳୁଥିଲେ । ସେତେବେଳର ସମାଜ ଥିଲା ଭିନ୍ନ । ଗାଁ ଭିଁ । କେତେଜଣ ଗୁହାଳ ପାଠ ପଢ଼ି ଦସ୍ତଖତ ଦେଉଥିଲେ, ନହେଲେ ପ୍ରାୟ ସମସ୍ତ ବାମହସ୍ତ ବୁଢ଼ା ଅଙ୍ଗୁଳିରେ ଟିପଚିହ୍ନ ଦେଉଥିଲେ । ଏପରିକି ଗ୍ରାମର ଗୌନ୍ତିଆମାନେ ମଧ୍ୟ ଟିପଚିହ୍ନ ଦେଉଥିଲେ । ଯେଉଁଦିନ ପୁନେଇଁ ପର୍ବ ପଡ଼େ ସେଦିନ ଗୁଡ଼ ମଧୁ ପାନ କରିବା, ଜଡ଼ା ତେଲର ବଳିତା ଜାଳି ଘର ଆଲୋକିତ କରିବା ଇତ୍ୟାଦି ପରମ୍ପରା ରହିଥିଲା ।

## କଳା ଶିକ୍ଷା ଏବଂ ବିଭିନ୍ନ ସମୟରେ କାର୍ଯ୍ୟ :

ଉଚ୍ଚଶିକ୍ଷାରୁ ବଞ୍ଚିତ ହୋଇ କୁଞ୍ଜବିହାରୀ ବାଲ୍ୟାବସ୍ଥାରୁ ତାଙ୍କର କୌଳିକ ବୃତ୍ତି ବାନ୍ଧ ଓ ବୟନ ଶିଳ୍ପରେ ନିଜକୁ ନିୟୋଜିତ କରି, ତାକୁହିଁ ଧରିବାର ପୋଷଣର ପାଥେୟ ଭାବି ଦୃଢ଼ତାର ସହିତ ଲାଗିପଡ଼ିଲେ । ପ୍ରତ୍ୟେକ ନମୁନା କପଡ଼ାଗୁଡ଼ିକ ଉନ୍ନତ ଭାବେ ତୋଳିବା ହେଲା ତାଙ୍କର ପ୍ରଥମ ଅଭିଳାଷ । କିପରି ଭାବରେ ନୂତନ ଚିନ୍ତାଧାରା ପ୍ରୟୋଗ କରି ନମୁନାର ସୁନ୍ଦର ଡିଜାଇନ୍ ହୋଇପାରିବ ଓ ଶୀଘ୍ର ମଧ୍ୟ ହୋଇପାରିବ, ସେଥିପାଇଁ ଦିନରାତି ମନପ୍ରାଣ ଢାଳି ଏକାଗ୍ର ଚିତ୍ତରେ ଲାଗିପଡ଼ିଥାନ୍ତି ସେ । ସବୁବେଳେ ଚିନ୍ତାକରି କିଛି ନୂତନ ସନ୍ଧାନ ପାଇଲେ, ଏହା ଏକ ବିରାଟ ସମ୍ପଦ ଭାବି ସଙ୍ଗେ ସଙ୍ଗେ ଟିପି ରଖୁଥାନ୍ତି । ସେଥିପାଇଁ ଦିନରେ ଭୋକ ଏବଂ ରାତିରେ ନିଦ ମଧ୍ୟ ହୁଏ ନାହିଁ ତାଙ୍କୁ । ସେ କହନ୍ତି, ଭଗବାନଙ୍କ କୃପାରୁ ହିଁ ଆଖି ଆଗରେ ତାଙ୍କର ନିଜ ଭାବିଥିବା ଜିନିଷ ନାଚିଉଠେ । ମନ ତାଙ୍କର ଆନନ୍ଦରେ ଉତ୍ଫୁଲ୍ଲ ହୋଇ ଉଠେ ।

ନୂତନ ଡିଜାଇନର ନମୁନା ତିଆରି କରିବା ପାଇଁ ବୁଣିବା ସୂତାର ନମ୍ବର ଅନୁପାତରେ ବାନ୍ଧ ଓ ବୟନ କରିବାର ପ୍ରଣାଳୀ ତଥା

ନକ୍ସାକୁ ବାନ୍ଧରେ ଉପଯୋଗ କରିବାର ପ୍ରଣାଳୀ ଏବଂ ରଙ୍ଗ ଗୁଡ଼ିକର ଉପଯୁକ୍ତ ପ୍ରୟୋଗ ତ୍ୟାନ ପାଇଁ ସବୁବେଳେ ନୂତନ ଗବେଷଣାରେ ଲାଗି ପଡ଼ିଥିଲେ ସେ । ପୁଣି ଉକ୍ତ ନମୁନାକୁ ବାନ୍ଧ ଡ଼ିଜାଇନ୍ କରିବାକୁ ହେଲେ ସୂତାକୁ ପ୍ରଥମେ ସପରିବାର ଲାଗି ଉପଯୁକ୍ତ ଭାବରେ ସାଇଜ କରିବାକୁ ପଡ଼େ । ପରେ ପର୍ଯ୍ୟାୟକ୍ରମେ ବାନ୍ଧ ଓ ରଙ୍ଗ ଇତ୍ୟାଦି କରି ପରବର୍ତ୍ତୀ ବୁଣା କରିବାକୁ ପଡ଼େ । ତାହା ଶାଢ଼ୀ ହେଉ ଅବା ନମୁନା ହେଉ ବୁଣି ସାରିଲା ପରେ ତାଙ୍କୁ ଲାଗେ ଯେତେ ଯେପରି ସ୍ୱପ୍ନଟା ତାଙ୍କର ସାର୍ଥକ ହୋଇଛି ।

କୁଞ୍ଜବିହାରୀଙ୍କ ହାତତିଆରି ନମୁନା ଅତ୍ୟନ୍ତ ଲୋକପ୍ରିୟ ହେଉଥିବାରୁ ସେଠାକାର ଶିଳ୍ପୀମାନେ ବ୍ୟାବସାୟିକ ଲାଭ ପାଇଁ ତାହାଙ୍କୁ ଅନୁକରଣ କରିଥିଲେ । ସେ ପ୍ରଥମେ ନିଜର ଏହି କଳା ପ୍ରତିଭାକୁ ନିଜ ଭିତରେ ଲୁଚାଇ ନ ରଖି ଭାଇମାନଙ୍କୁ ଓ ଅନ୍ୟ ସମ୍ପର୍କୀୟମାନଙ୍କୁ ଶିକ୍ଷା ଦେଲେ । ଏବଂ ପରେ ବୁଣାକାରମାନେ ଆସି ତାଙ୍କ ପାଖରୁ ନୂତନ ନମୁନା ସହିତ ଉନ୍ନତ ପ୍ରକାର ବୁଣା ସରଞ୍ଜାମ ଓ ବାନ୍ଧ ସରଞ୍ଜାମର ଶିକ୍ଷା ପାଉଛନ୍ତି । ଏହାଦ୍ୱାରା ସେଠାକାର ବୁଣାକାରମାନେ ଭଲ ଦି ପଇସା ଉପାର୍ଜନ କରିବା ସଙ୍ଗେ ସଙ୍ଗେ ଉକ୍ତ କଳାର ମଧ୍ୟ ବିଶେଷ ଅଗ୍ରଗତି ଘଟୁଛି ।

ତାଙ୍କୁ ଯେତେବେଳେ କୋଡ଼ିଏ ବର୍ଷ ବୟସ, ସେ ଶୁଣିଲେ ସମ୍ବଲପୁରର ୰ ରାଧେଶ୍ୟାମ ମେହେର, କଂଗ୍ରେସରେ ପ୍ରଥମ କରି ଯୋଗଦାନ କରିଥାନ୍ତି । ସେହି ସମୟରେ ହୀରାକୁଦ ବନ୍ଧର ଶୁଭ ଦେବା ପାଇଁ ତତ୍କାଳୀନ ଭାରତର ପ୍ରଧାନମନ୍ତ୍ରୀ ୰ ଜବାହାରଲାଲ ନେହେରୁ ସମ୍ବଲପୁର ଆସିଥିବା ଅବସରରେ, ରାଧେଶ୍ୟାମ ମେହେରଙ୍କ ଗୃହକୁ ଯାଇ ତାଙ୍କ ହାତତିଆରି ପର୍ଦ୍ଦା ଓ ଶାଢ଼ୀର କାମ ଦେଖି ତାଙ୍କୁ ସ୍ୱର୍ଣ୍ଣପଦକ ପ୍ରଦାନ କରିଥିଲେ ।

ରାଧେଶ୍ୟାମ ମେହେରଙ୍କୁ ଥରେ ଦର୍ଶନ କରିବା ପାଇଁ କୁଞ୍ଜବାବୁଙ୍କ ମନ ସର୍ବଦା ବ୍ୟାକୁଳ ହୋଇ ଉଠୁଥାଏ । ରାଧେଶ୍ୟାମ ମେହେର ଥିଲେ କଳା ଓ କପଡ଼ାର ଶୁଭେଚ୍ଛୁ । ଥରେ କୁଞ୍ଜବାବୁ ୪୦ ନମ୍ବର, ୬୦ ନମ୍ବର ସୂତାରେ ତିଆରି ୧୦ ଖଣ୍ଡ ଶାଢ଼ୀ ଧରି ପିତା ବ୍ରଜମୋହନଙ୍କ

ସମ୍ଭବତ ତାଙ୍କ ନିକଟକୁ ଯାଇଥିଲେ । ଶାଢ଼ୀଗୁଡ଼ିକୁ ଦେଖି ରାଧେଶ୍ୟାମ ମେହେରଙ୍କ ହୃଦୟରେ ଏପରି ସ୍ନେହ, ଶ୍ରଦ୍ଧା ଓ ଆଗ୍ରହ ସୃଷ୍ଟି ହେଲା ଯେ କୁଞ୍ଜବାବୁଙ୍କୁ ଆଲିଙ୍ଗନ କରି ତାଙ୍କ ବାପାଙ୍କୁ କହିଲେ, "ଆଜ୍ଞା ଏ ପୁଅକୁ ମୋ ପାଖକୁ ସବୁବେଳେ ପଠାଉଥାନ୍ତୁ । ତାଙ୍କର ଆଗ୍ରହ ଓ ଶ୍ରଦ୍ଧା ଦେଖି ପ୍ରତି ମାସରେ ଥରେ କପଡ଼ା ଧରି କୁଞ୍ଜବାବୁ ତାଙ୍କ ନିକଟକୁ ଯାଉଥିଲେ । ରାଧେଶ୍ୟାମ ମେହେରଙ୍କ ଶ୍ରଦ୍ଧା ଓ କଳାପ୍ରତି ସମ୍ମାନ ତାଙ୍କୁ ବିଶେଷ ଭାବେ ଅନୁପ୍ରାଣିତ କରିଥିଲା । ରାଧେଶ୍ୟାମ ମେହେରଙ୍କ ପଦଟିଏ କଥା 'ତୁମେମାନେ ହିଁ ଦେଶର ଉଜ୍ଜ୍ୱଳ ଭବିଷ୍ୟତ ଓ ଗୌରବ । ନିଶ୍ଚୟ ଦିନେ ନା ଦିନେ ଏହି ଶିଳ୍ପକଳାରେ ତୁମେ ଜଣେ ବିଶିଷ୍ଟ ଶିଳ୍ପୀ ଭାବରେ ପରିଗଣିତ ହେବ' ସେକଥା କୁଞ୍ଜବାବୁ ଆଜି ପର୍ଯ୍ୟନ୍ତ ଭୁଲି ପାରି ନାହାନ୍ତି । ତାଙ୍କ ସ୍ନେହ ଓ ଶ୍ରଦ୍ଧାରେ ବାନ୍ଧିହୋଇ ସେ ଦୀର୍ଘ ପନ୍ଦର ବର୍ଷ ପର୍ଯ୍ୟନ୍ତ ତାଙ୍କୁ କପଡ଼ା ଯୋଗାଇ ଆସୁଥିଲେ । ଦୁର୍ଭାଗ୍ୟବଶତଃ ରାଧେଶ୍ୟାମ ବାବୁ ଅକାଳରେ ଜିପ୍ ଦୁର୍ଘଟଣାରେ ସ୍ୱର୍ଗାରୋହଣ କଲେ । ତତ୍ପରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ୰ ଲିଙ୍ଗରାଜ ମେହେରଙ୍କ ପୁତ୍ର ୰ ଯୁଧିଷ୍ଠିର ମେହେର ସମ୍ବଲପୁର ସହରର ଗୋଇଟି ରୋଡ଼ ଉପରେ ନୂତନ କରି ସମ୍ବଲପୁରୀ ବସ୍ତ୍ରର ଏକ ନୂତନ ଏମ୍ପୋରିୟମ୍ କରିଥାନ୍ତି । ସେ ଉତ୍ସାହିତ ହୋଇ କୁଞ୍ଜବାବୁଙ୍କ ଠାରୁ ଶାଢ଼ୀ ଦୀର୍ଘଦିନ ଧରି ନେଲେ । ୰ କୃତାର୍ଥ ଆଚାର୍ଯ୍ୟ ମଧ୍ୟ ଲୋକମୁଖରୁ କୁଞ୍ଜବାବୁଙ୍କ ପ୍ରଶଂସା ଶୁଣି ତାଙ୍କର ବରଗଡ଼ଠାରେ ନବଗଠିତ ଅନୁଷ୍ଠାନ 'ସମ୍ବଲପୁରୀ ବସ୍ତ୍ରାଳୟ' ପାଇଁ ଶାଢ଼ୀ ପଠାଇବାକୁ କୁଞ୍ଜବିହାରୀଙ୍କ ପିତାଙ୍କୁ ଅନୁରୋଧ କରିଥିଲେ । କୁଞ୍ଜବାବୁଙ୍କ ହାତତିଆରି ଶାଢ଼ୀକୁ ଦେଖି ସେ କହୁଥିଲେ 'ବାନ୍ଧକାମରେ ଏପରି ନମୁନା ହେବା ଯେ ସମ୍ଭବ ଏକଥା ମୁଁ କେବେ ସ୍ୱପ୍ନରେ ମଧ୍ୟ କଳ୍ପନା କରିପାରି ନଥିଲି ।'

କୁଞ୍ଜବାବୁଙ୍କୁ ଯେତେବେଳେ ୩୫ ବର୍ଷ ବୟସ ସେତେବେଳେ ସେ "The Glory of Orissa" ନାମକ ଏକ ପର୍ଦ୍ଦା ତିଆରି କରିବା ପାଇଁ ଲାଗିପଡ଼ିଥିଲେ । କେବଳ ତାହାର ନକ୍ସା କରୁ କରୁ ତିନିମାସ ବିତିଗଲା । ଏତିକିବେଳେ ତାଙ୍କ ପରିବାରରେ ଅଶାନ୍ତି ଘନେଇ ଆସିଲା ଏବଂ ତାଙ୍କୁ ବାଧ୍ୟହୋଇ ନିଜ ପରିବାର ଛାଡ଼ି ଅନ୍ୟ ପରିବାରରେ ରହିବାକୁ ପଡ଼ିଲା ।

ସେ ପିଲା ଦିନରୁ ନିଜର ଗୃହ ଜମିରୁ ଉତ୍ପାଦିତ ଧାନ, ମୁଗ ଖରି ବ୍ୟବହାର କରି ଆସୁଥିଲେ । ଅନ୍ୟ ପରିବାରରେ ରହିବାରୁ ତାଙ୍କୁ ସେ ସବୁଥିରୁ ବଞ୍ଚିତ ହେବାକୁ ପଡ଼ିଲା । ହଠାତ୍ ଏସବୁ ଘଟିଯିବାରୁ କୁଞ୍ଜବିହାରୀଙ୍କ ନିକଟରେ ଦିନକର ଖାଦ୍ୟ ଯୋଗାଡ଼ ମଧ୍ୟ ଅତ୍ୟନ୍ତ କଷ୍ଟ ହୋଇପଡ଼ିଥିଲା । ବାଧ୍ୟହୋଇ ମା'ଙ୍କୁ ଯାଇ କହିଲେ 'ମା ସକାଳବେଳା ଗାଈ ଦେଇଥିବା କ୍ଷୀରରୁ ଅଳ୍ପ କିଛି ଗୋଟିଏ ପାତ୍ରିନ (ମାଟିହାଣ୍ଡି)ରେ ଦିଅ' । ମାଆ ତାଙ୍କ ହାତରେ ଯାହା ଦେଲେ ତାହା ହିଁ ନିଜର ସର୍ବସ୍ୱ ମନେକରି ଗ୍ରହଣ କଲେ ସେ । ସବୁ ଜିନିଷପତ୍ର କଣା, ଦୁଇପୁଅଙ୍କ ସ୍କୁଲ ପଢ଼ା, ଲୁଗା ବୁଣିବାକୁ ସୂତା ରଙ୍ଗ ନାହିଁ, କେବଳ ଘର ଖଣ୍ଡିଏ ଓ ବୁଣା ସରଞ୍ଜାମ ରଖି ଭାଗ୍ୟକୁ ଆଦରି ନିଜର କର୍ତ୍ତବ୍ୟରେ ଲାଗିଲେ କୁଞ୍ଜବାବୁ । ଘରର କୌଣସି ଜମିବାଡ଼ି ବା ସମ୍ପତ୍ତି ତାଙ୍କୁ ମିଳି ନ ଥିଲା । ଏକମାତ୍ର ସହାୟ ଥିଲା କାଠମଙ୍ଗ (ତନ୍ତ) ଗୋଟିଏ ।

ବିଧିର ଏତେ କଠୋର ଉପହାସ ସତ୍ତ୍ୱେ ଭାଙ୍ଗି ପଡ଼ି ନଥିଲେ କୁଞ୍ଜବିହାରୀ । କେବଳ ପ୍ରଭୁଙ୍କୁ ଆଶ୍ରା କରି ନିଜର କର୍ମ ଓ କଳା ଉପରେ ବିଶ୍ୱାସ ରଖି ଧୈର୍ଯ୍ୟଧରି ରହିଥାନ୍ତି ସେ । ଭଗବତ୍ ଗୀତାରେ ପ୍ରଭୁ ଶ୍ରୀକୃଷ୍ଣଙ୍କ ଉକ୍ତି ସବୁବେଳେ ମନେ ପଡ଼ୁଥାଏ । କର୍ମ କରିଯାଅ, ଫଳ ପ୍ରାପ୍ତିର ଆଶା ରଖନାହିଁ—ସେ ତ ପାଇଛନ୍ତି ସର୍ବଶ୍ରେଷ୍ଠ ଜୀବନ—ମାନବ ଜୀବନ, ତାହା ସଙ୍ଗେ ଶ୍ରେଷ୍ଠ କର୍ମ ବୟନ । ଏହା ତ ତାଙ୍କର ପରମ ସୌଭାଗ୍ୟ । ସାମୟିକ ଦୁଃଖରେ ସେ ଭାଙ୍ଗି ପଡ଼ିବେ କାହିଁକି । ଏହିକଥା ଚିନ୍ତା କରି କାମରେ ସ୍ପୃହା ରଖିଥାନ୍ତି ସେ । କିନ୍ତୁ ଇଂରାଜୀରେ ଏକ ପ୍ରବାଦ ଅଛି "Bad time never comes alone" ଅର୍ଥ ଖରାପ ସମୟ କେବେ ଏକୁଟିଆ ଆସେ ନାହିଁ । ଠିକ୍ ତାହାହିଁ ଘଟିଥିଲା କୁଞ୍ଜବିହାରୀଙ୍କ ଜୀବନରେ । ଏତେବଡ଼ ଦୁର୍ଦ୍ଦିନରେ ମଧ୍ୟ ଭାଙ୍ଗି ନପଡ଼ି କୁଞ୍ଜବିହାରୀ ଏକ ସୁନ୍ଦର ଫର୍ଦ୍ଦ ବାନ୍ଧି ତିଆରି କରିବାରେ ଦୀର୍ଘ ତିନିମାସ ଲାଗି ପଡ଼ିଥିଲେ । ସେଇଥିପାଇଁ ଆରମ୍ଭ ହୋଇଗଲା ଅଣ୍ଟା, ବେକ ଏବଂ ମୁଣ୍ଡବିନ୍ଧା । ଅନେକ ଡାକ୍ତରଙ୍କ ପାଖରୁ ଚିକିତ୍ସା କରାଇ ମଧ୍ୟ କିଛି ଫଳ ହେଲା ନାହିଁ । ଏ ରୋଗ ଦୀର୍ଘ ଦୁଇବର୍ଷ ପର୍ଯ୍ୟନ୍ତ ରହିଲା । ସେତେବେଳକୁ ଦୁଇପୁଅ 'ଦୟାନିଧି' ଓ 'ସୁରେନ୍ଦ୍ର' ଗାଁରୁ ପଞ୍ଚମ ଶ୍ରେଣୀ ପଢ଼ା ସାରିଲେଣି । ତାଙ୍କୁ ବରପାଲି

ହାଇସ୍କୁଲରେ ପଢ଼ାଇବାକୁ ହେବ । ତେଣୁ ନିଜର କର୍ତ୍ତବ୍ୟ ସମ୍ପାଦନ ନିମିତ୍ତ ଦୁର୍ବଳ ଶରୀରକୁ ଧରି ପରିବାର ବରପାଲିକୁ ଚାଲି ଆସିଲେ । ସେଠାରେ ପ୍ରଥମେ ଭଡ଼ାଘରେ ରହି ଦୁଇପୁଅଙ୍କ ପାଠ ପଢ଼ିବାର ବନ୍ଦୋବସ୍ତ କଲେ । ସେତେବେଳେ ତାଙ୍କର ଦୁଇଭାଇ ହରେରାମ ଓ ସୀତାରାମ ସାନଥିବାରୁ ତାଙ୍କୁ ମଧ୍ୟ କାମ ଶିଖାଉଥିଲେ ।

କୃଷ୍ଣବିହାରୀ ଗୋଟିଏ ଗୋଟିଏ ଶାଢ଼ୀକୁ ଅର୍ଦ୍ଧଦିନ ଧରି ବୁଣି ସୁନ୍ଦର କରୁଥିବାରୁ, ଅନେକ ହିତାକାଂକ୍ଷୀ ତାଙ୍କୁ ଏଥିରୁ ନିବୃତ୍ତ ରହିବାକୁ ଉପଦେଶ ଦେଉଥିଲେ । କାରଣ ଏଥିରେ ଉପାସ ଭୋକରେ ରହି କାମ କରିବାକୁ ପଡ଼ୁଥିଲା । କିନ୍ତୁ ସେମାନଙ୍କ ପ୍ରଶ୍ନର ଉତ୍ତରରେ କୃଷ୍ଣବାବୁ କହୁଥିଲେ 'କେଉଟ ଧରେ ମାଛ ଖାଏ କଙ୍କଡ଼ା, ଲୁଗା ବୁଣେ ଭୁକିଆ ପିନ୍ଧେ ଲେଙ୍ଗଡ଼ା ।' କାରଣ ସେ ଜାଣିଥିଲେ ଏହିଭଳି ସମସ୍ୟାକୁ ଆଖି ଆଗରେ ରଖିଲେ କେବେ ନୂତନ ଆବିଷ୍କାର ହୋଇ ପାରିବ ନାହିଁ । ତେଣୁ ସର୍ବଦା ଭଗବାନଙ୍କୁ ଡାକୁଥିଲେ ତାଙ୍କୁ ସଦବୁଦ୍ଧି ଓ ସତ୍‌ପଥ ଦର୍ଶାଇବା ପାଇଁ ।

ସୂକ୍ଷ୍ମ କାମ କଲେ ନୂତନ ବୁଣା ସରଞ୍ଜାମ ସଂଗ୍ରାମ କରିବାକୁ ପଡ଼ିବ ଓ ତନ୍ତକୁ ମଧ୍ୟ ବଦଳାଇବାକୁ ପଡ଼ିବ । ସେ ସମୟରେ ୧୦୦ ନମ୍ବର ସୂତାରେ ଶାଢ଼ୀ ବୁଣିବା ଥିଲା ଅତ୍ୟନ୍ତ କଷ୍ଟସାଧ୍ୟ । ଖଣ୍ଡିଏ ଶାଢ଼ୀର ମଜୁରୀ ୨୯ ଟଙ୍କା । ଏମିତି ମାସରେ କେତେ ଖଣ୍ଡ ଶାଢ଼ୀ ବୁଣି ସେ ପରିବାର ପୋଷଣ କରିବେ ? ତେଣୁ ନୂତନ ବୁଣା ସରଞ୍ଜାମ ପାଇଁ ନିଜ ହାତରେ ବଢ଼େଇ କାମ କରି ତିଆରି କଲେ ସେ । ସେ ସମୟର ସୁଦକ୍ଷ ବଢ଼େଇ ମଧ୍ୟ ସେ ଅଞ୍ଚଳରେ ନଥିଲେ । ତେଣୁ, ନିଜେ ବୁଣା ସରଞ୍ଜାମ ଯଥା—ପନ୍ନି, କାମ୍ପି, କୁଚି, ରହଟା (ଅରଟ), ଉପୂନ୍ଲା, ଅସାରି, ଇତ୍ୟାଦି ତିଆରି କଲେ । ଏହା ପୂର୍ବରୁ ସେ ଅଞ୍ଚଳର ସୂକ୍ଷ୍ମ ବୁଣାକାରମାନେ ଯେଉଁ ଶାଢ଼ୀ ମାସକୁ ତିନଖଣ୍ଡ ବୁଣୁଥିଲେ, କୃଷ୍ଣବାବୁ ନିଜ ହାତତିଆରି ନୂତନ ତନ୍ତରେ ପ୍ରଥମ ମାସରେ ଛଅ ଖଣ୍ଡ ଶାଢ଼ୀ ବୁଣିଲେ । ପରେ ମାସକୁ ଆଠ ଖଣ୍ଡ ପର୍ଯ୍ୟନ୍ତ ବୁଣିଲେ । ଏବେ ଦେଖିବାକୁ ଗଲେ ସେ ଅଞ୍ଚଳର ପ୍ରାୟ ପ୍ରତ୍ୟେକ ବୁଣାକାର ତାଙ୍କର ପ୍ରଣାଳୀକୁ ଅନୁସରଣ କରିଛନ୍ତି ।

ରାସାୟନିକ ରଙ୍ଗର ଉଦ୍‌ଭାବନ ହେବା ପରେ ପ୍ରଥମେ ମାତ୍ର ପାଞ୍ଚ ଛଅ ଗୋଟି ରଙ୍ଗ ମିଳିଲା । ସେହି ପାଞ୍ଚ ଛଅ ଗୋଟି ରଙ୍ଗରୁ ଏକ ରଙ୍ଗକୁ ଅନ୍ୟ ଏକ ରଙ୍ଗ ସାଙ୍ଗରେ ମିଶାଇ କୃଞ୍ଜବାବୁ ବିଭିନ୍ନ ରଙ୍ଗ ତିଆରି କଲେ ଏବଂ ପ୍ରାକୃତିକ ଦୃଶ୍ୟାବଳୀରେ ଏ ସବୁର ପ୍ରୟୋଗ ବାନ୍ଧ ମାଧ୍ୟମରେ କପଡ଼ାରେ ଅତି ଚମତ୍କାର ଭାବରେ ସେ ପ୍ରୟୋଗ କରି ପାରିଲେ । ତଦ୍‌ଦ୍ୱାରା ସମ୍ବଲପୁରୀ ବାନ୍ଧଶାଢ଼ୀର ଗୁଣାତ୍ମକ ମୂଲ୍ୟ ଆହୁରି ବଢ଼ି ଯାଇଥିଲା ।

"The Glory of Orissa" ନାମକ ତିଆରି କରୁଥିବା ପର୍ଦ୍ଦାକୁ ସାରିବା ପାଇଁ କୃଞ୍ଜବାବୁଙ୍କୁ ବହୁ କଷ୍ଟ ସ୍ୱୀକାର କରିବାକୁ ପଡ଼ିଥିଲା । ପର୍ଦ୍ଦାଟିର କାମ ଶେଷ ହେବା ପରେ ୰ କବି ଗଙ୍ଗାଧର ମେହେରଙ୍କ ପୁତ୍ର ୰ ଭଗବାନ ମେହେର ସେହି ପର୍ଦ୍ଦାଟିକୁ ଧରି ଭୁବନେଶ୍ୱର ଯିବାକୁ ତାଙ୍କୁ ପ୍ରେରଣା ଦେଇଥିଲେ । ଭୁବନେଶ୍ୱର ଠାରେ ତାଙ୍କ ପୁତ୍ର ଶ୍ରୀ ବିନୋଦଚନ୍ଦ୍ର ମେହେରଙ୍କ ସହାୟତାରେ ରାଜଧାନୀ ଠାରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ, ଶିଳ୍ପମନ୍ତ୍ରୀ ଶ୍ରୀ ହରିହର ପଟେଲ, ସମବାୟ ବିଭାଗ ମନ୍ତ୍ରୀ ଶ୍ରୀ ମୁରାରି ପ୍ରସାଦ ମିଶ୍ର ପ୍ରମୁଖଙ୍କ ସହିତ ସାକ୍ଷାତ କରି ଏହି ପର୍ଦ୍ଦା ଦେଖାଇଲେ । ସେମାନେ ଆନନ୍ଦିତ ହୋଇ ପର୍ଦ୍ଦାର ବହୁ ପ୍ରଶଂସା କରି ଖଣ୍ଡିଏ ରାଜଧାନୀ ଠାରେ ଚିରଦିନ ସକାଶେ ରଖିବାର ବନ୍ଦୋବସ୍ତ କରିଥିଲେ ।

ପର୍ଦ୍ଦାଟିର ଉପରଭାଗରେ ଏକାକ୍ଷର ଓଁ ଦିଆଯାଇଥିଲା । ତା'ପରେ ସେଥିରୁ ସୌରଜଗତ, ପୃଥିବୀ, ପରେ ସ୍ୱାଧୀନ ଭାରତବର୍ଷର ମାନଚିତ୍ର ସଙ୍ଗେ ମହାତ୍ମାଗାନ୍ଧି ଓ ଜବାହରଲାଲ୍ ନେହେରୁଙ୍କ ଆବକ୍ଷ ଚିତ୍ର ଦିଆଯାଇଥିଲା । ହୀରାକୁଦ ବନ୍ଧରୁ ବିଜୁଳି ଉତ୍ପାଦନ, ଜଳସେଚନ ଦ୍ୱାରା କୃଷି, କୃଷକ, ହଳ ଲଙ୍ଗଳ ଇତ୍ୟାଦିର ଦୃଶ୍ୟ ସଙ୍ଗେ ଅନ୍ୟପଟେ ସମ୍ବଲପୁରୀ ବାନ୍ଧ ଓ ବୟନ ଶିଳ୍ପ ସହିତ ବୁଣାକାର ଓ ବୁଣାକାରର ସମସ୍ତ ସରଞ୍ଜାମର ଦୃଶ୍ୟାବଳୀ ମଧ୍ୟ ସେଥିରେ ଦିଆଯାଇଥିଲା ।

୧୯୬୦ ରେ ସେହି ନମୂନାର ଖଣ୍ଡିଏ ପର୍ଦ୍ଦା ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ନିକଟକୁ ସେ ପଠାଇଥିଲେ ଏବଂ

ଶ୍ରୀମତୀ ଗାନ୍ଧୀ ମଧ୍ୟ ପ୍ରତ୍ୟୁତ୍ତରରେ ଏକ ଧନ୍ୟବାଦ ପତ୍ର ପଠାଇଥିଲେ । ସେହି ପର୍ଦ୍ଦାରୁ ଅନ୍ୟ ଗୋଟିଏ ପୂର୍ବ ଜର୍ମାନୀର ଦୁଇଜଣ ବ୍ୟକ୍ତି ମେହେରଙ୍କ ଘରକୁ ଆସି ଜର୍ମାନୀର ରାଜଧାନୀ ବର୍ଲିନ୍ ମ୍ୟୁଜିୟମ୍‌ରେ ସଂଗୃହୀତ କରି ରଖିବା ପାଇଁ ନେଇଯାଇଥିଲେ । ଓଡ଼ିଶା ଖଦୀ ଗ୍ରାମୋଦ୍ୟୋଗ ବୋର୍ଡ଼ ମଧ୍ୟ ଉକ୍ତ ପର୍ଦ୍ଦାରୁ ଖଣ୍ଡିଏ ରଖିଛନ୍ତି ।

୧୯୭୦ ମସିହାରେ "ନବଗୁଞ୍ଜର" ନାମକ ଏକ ନମୂନା ସେ ମହାଭାରତ ଗ୍ରନ୍ଥରୁ ଉଦ୍ଧାର କରିଥିଲେ । ସେଥିର ବିଷୟବସ୍ତୁ ଥିଲା, ଶାପ ବଶତଃ ଅର୍ଜୁନ କବାଟ ବେଶରେ ବୃନ୍ଦାବନରେ ଭ୍ରମଣ କରୁଥାନ୍ତି । ସେହି ସମୟରେ ତାଙ୍କର ଅନ୍ତରଙ୍ଗ ସଖା କୃଷ୍ଣ ତାଙ୍କୁ ଛଳନା କରି ଏକ ଭୟଙ୍କର ରୂପ ଧାରଣ କରିଥିଲେ । ଏଥିରେ ନଅଟି ଜନ୍ତୁଙ୍କ ରୂପର ସଂଯୋଗ ହୋଇଥିଲା । ନଅଟି ଜନ୍ତୁଙ୍କ ସମ୍ମିଶ୍ରିତ ଏହି ଭୟଙ୍କର ରୂପ ଧାରଣ କରି ଅର୍ଜୁନଙ୍କ ସମ୍ମୁଖରେ ସେ ଉଭା ହୋଇଥିଲେ । କିନ୍ତୁ ମଣିଷ ହସ୍ତରେ ଚକ୍ର ଦେଖି ଏହା ନିଜ ସଖାଙ୍କ ଛଳନା ଭାବି ଅର୍ଜୁନ ପ୍ରଣିପାତ କରିଥିଲେ ।

୧୯୭୨ ମସିହାରେ 'ବାପୁଜୀ ଏକ ଅବଦାନ" ନାମକ ଖଦୀ ସୂତାରେ ତିଆରି ଏକ ନମୂନା ସେ ପ୍ରସ୍ତୁତ କରିଥିଲେ । ଏଥିରେ ବାପୁ ଏବଂ ତାଙ୍କର ଅବଦାନ "କୁଟି ଖାଇବା ଓ କାଟି ପିନ୍ଧିବା"ର ଚିତ୍ର ପ୍ରତିପାଦିତ ହୋଇଥିଲା । ପର୍ଦ୍ଦାରୁ ଖଣ୍ଡିଏ ମଧ୍ୟ ତତ୍କାଳୀନ ପ୍ରଧାନ ମନ୍ତ୍ରୀଙ୍କ ନିକଟକୁ ପଠାଯାଇଥିଲା ।

୧୯୭୫ ମସିହାରେ ସେ ଏକ ସୂତାଶାଢ଼ୀ ତିଆରି କରି ଭୁବନେଶ୍ୱର ଠାରେ ଅନୁଷ୍ଠିତ ସର୍ବଭାରତୀୟ ହସ୍ତତନ୍ତ ପ୍ରତିଯୋଗିତାକୁ ପଠାଇଥିଲେ । ଶାଢ଼ୀର ସୂକ୍ଷ୍ମ କାରୁକାର୍ଯ୍ୟରେ ନିର୍ବାଚନ କମିଟି ଅତ୍ୟନ୍ତ ଖୁସି ହୋଇ ଶାଢ଼ୀଟିର ନାମ "ଭାରତରତ୍ନ" ରଖିଥିଲେ ଏବଂ ଏହା ପ୍ରଥମ ପୁରସ୍କାର ଲାଭ କରିଥିଲା ।

୧୯୭୭ ମସିହାରେ କୁଞ୍ଜବାବୁ ହସ୍ତତନ୍ତ ବାନ୍ଧ ଓ ବୟନ କାମରେ ଅତି ସୂକ୍ଷ୍ମଭାବରେ ଭଗବାନଙ୍କ ଦଶ ଅବତାର ଚିତ୍ର ତିଆରି କରିଥିଲେ ।

୧୯୭୯ ମସିହାରେ ସେ "ଭକ୍ତବତ୍ସଳ ଭଗବାନ" ନାମକ ଏକ ନମୂନା ତିଆରି କରିଥିଲେ । ତହିଁରେ ଭଗବାନ ଶ୍ରୀ ରାମଚନ୍ଦ୍ରଙ୍କ ସେତୁ ବନ୍ଧ ସମୟରେ ଗୁଣ୍ଡୁଚି ମୂଷା ପ୍ରତି ତାଙ୍କର ଶ୍ରଦ୍ଧା ଓ ଭକ୍ତବତ୍ସଳତା ଚିତ୍ରଣ କରାଯାଇଥିଲା । ଏହାର ଏକ ନମୂନାକୁ ପ୍ରଥମେ ବରପାଲି ଶ୍ରୀରାମଚନ୍ଦ୍ର ମନ୍ଦିରରେ ସେ ସମର୍ପଣ କରିଥିଲେ । ଏହା ଏବେ ମଧ୍ୟ ସେଠାରେ ସୁରକ୍ଷିତ ହୋଇ ରହିଛି । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ବରପାଲି ପରିଦର୍ଶନ ଅବସରରେ ବରପାଲି ବାସିନ୍ଦାଙ୍କ ତରଫରୁ ଏକ ନମୂନା ତାଙ୍କୁ ସେ ପ୍ରଦାନ କରିବାରୁ । ମାନ୍ୟବର ମୁଖ୍ୟମନ୍ତ୍ରୀ ତାଙ୍କ କଳାର ଭୂୟସୀ ପ୍ରଶଂସା କରିଥିଲେ ।

୧୯୮୧ ମସିହାରେ ସେ ସ୍ୱଭାବକବି ଗଙ୍ଗାଧର ମେହେରଙ୍କ ଚିତ୍ର ହସ୍ତତନ୍ତ ଶିଳ୍ପଦ୍ୱାରା ତିଆରି କରିଥିଲେ । ତହିଁରେ କବିଙ୍କର ଚିତ୍ର ସହିତ ତାଙ୍କ ମଧୁମୟ ପଦ୍ୟର ଦୁଇଟି ପଂକ୍ତି ରହିଥିଲା ।

୧୯୮୨ ମସିହାରେ ଋଷିଆର ମହାପୁରୁଷ "ଲେନିନ୍"ଙ୍କ ଆବକ୍ଷ ଚିତ୍ର ସେ ବାନ୍ଧ ଓ ବୟନ ନମୂନାରେ ତିଆରି କରିଥିଲେ । ସେହିବର୍ଷ ଦିଲ୍ଲୀଠାରେ ଅନୁଷ୍ଠିତ ସର୍ବଭାରତୀୟ ହସ୍ତଶିଳ୍ପ ପ୍ରଦର୍ଶନୀରେ ଯୋଗ ଦେବାପାଇଁ ଭାରତ ସରକାରଙ୍କ ନିମନ୍ତ୍ରଣ ପାଇ ଏହି ନମୂନା ଏବଂ ୧୯୭୫ରେ ତିଆରି ଭାରତରତ୍ନ ଶାଢ଼ୀ ଖଣ୍ଡିକୁ ନେଇ ପ୍ରଦର୍ଶନୀରେ ଯୋଗ ଦେଇଥିଲେ । ପ୍ରଦର୍ଶନୀ ଉନ୍ମୋଚିତ ହେଲା ପରେ ସେହିଦିନ 'ସେଣ୍ଟ୍ରାଲ୍ କଟେଜ୍ ଇଣ୍ଡଷ୍ଟ୍ରିଜ୍'ର ଚେୟାରମେନ୍ ଶ୍ରୀଯୁକ୍ତ ବି. ବି. ଭସିନ୍‌ଙ୍କ ସହିତ ଆମେରିକା କାଲିଫର୍ଣ୍ଣିଆର ଏକ ବିଶିଷ୍ଟ ଦମ୍ପତି "ମେରୀ ଏଣ୍ଡ ଟୋମି ଡ଼ ବୋନ୍" ଷ୍ଟଲକୁ ଆସି "ଭାରତରତ୍ନ" ଶାଢ଼ୀ ଖଣ୍ଡିକୁ ଦେଖି କୁଞ୍ଜବିହାରୀଙ୍କ କଳାର ଭୂୟସୀ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ୧୫୬୨୫ ଟଙ୍କା ଦେଇ ଗୋଟିଏ ଶାଢ଼ୀ ନେଇଥିଲେ ଏବଂ ଅତି ଆଶ୍ଚର୍ଯ୍ୟ ଭାବରେ ପରବର୍ତ୍ତୀ ବର୍ଷ ଉକ୍ତ ଦମ୍ପତି ବରପାଲି ଗ୍ରାମକୁ ଆସି "ଭାରତ ରତ୍ନ" ଶାଢ଼ୀ ଉପରେ ଲିଖିତ ଏକ ପୁସ୍ତକ କୁଞ୍ଜବିହାରୀଙ୍କୁ ଅର୍ପଣ କରିଥିଲେ ।

ଦିଲ୍ଲୀରେ ଅନୁଷ୍ଠିତ ହେଉଥିବା ପ୍ରଦର୍ଶନୀକୁ ଯିବା ଅବସରରେ 'ଲେନିନ୍'ଙ୍କ ନମୂନା ଖଣ୍ଡିକ ଋଷିଆ ସରକାରଙ୍କୁ ପ୍ରଦାନ କରିବା ପାଇଁ

ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଜେନେରାଲ ସେକ୍ରେଟାରୀ ଶ୍ରୀ ରାଜେଶ୍ୱର ରାଓଙ୍କୁ ଦେଇ ପ୍ରଦାନ କରିଥିଲେ ଏବଂ ତାହା ଶ୍ରୀ ରାଓ ଆନନ୍ଦର ସହିତ ଗ୍ରହଣ କରି ପରବର୍ତ୍ତୀ ସମୟରେ ଋଷିଆ ପଠାଇବାର ବନ୍ଦୋବସ୍ତ କରି ଦେଇଥିଲେ ।

୧୯୮୩ ମସିହାରେ "ଭାରତୀ କୁସୁମ" ନାମକ ଏକ ପାଟଶାଢ଼ୀ ସେ ଅତି ସୂକ୍ଷ୍ମ କାରୁକାର୍ଯ୍ୟ ଦେଇ ତିଆରି କରିଥିଲେ । ଏହି ଶାଢ଼ୀ ଖଣ୍ଡିକରେ ମହାକବି କାଳିଦାସଙ୍କ ଦ୍ୱାରା ରଚିତ "ଅଭିଜ୍ଞାନମ୍ ଶାକୁନ୍ତଳମ୍" ର ଆଧାରିତ ନାନା ଚିତ୍ର ଓ ଶ୍ଳୋକ ରହିଥିଲା । କଣ୍ୱ ମୁନିଙ୍କ ଆଶ୍ରମରେ ଶକୁନ୍ତଳା, ପୁତ୍ର ଭରତଙ୍କ ସହିତ ମ୍ରିୟମାଣ ଅବସ୍ଥାରେ ରହିଥିବାର ବର୍ଣ୍ଣନା ତତ୍‌ସଙ୍ଗେ ପ୍ରାକୃତିକ ପରିବେଶ, ମୃଗଶିଶୁମାନଙ୍କୁ ଶକୁନ୍ତଳାଙ୍କ ଆଗ୍ରହ, ଭରତର ସିଂହ ଶାବକକୁ ଧରି ସିଂହୀ ସହିତ ଉପହାସ ମନୋବୃତ୍ତି, ମାଳିନୀ ନଦୀରେ ମତ୍ସ୍ୟ ସହିତ ମୁଦ୍ରିକାର ସଙ୍କେତ ଇତ୍ୟାଦି ଶାଢ଼ୀର ଅଞ୍ଚଳରେ ବାନ୍ଧିବାର ଚିତ୍ରଣ କରାଯାଇଥିଲା । ତଦ୍‌ସଙ୍ଗେ ଭରତଙ୍କ ନାମାନୁସାରେ 'ଭାରତ' ଦେଶର ନାମ ଇତ୍ୟାଦି ସହିତ ଶାଢ଼ୀର ମଧ୍ୟଭାଗକୁ ସ୍ୱର୍ଗର ପାରିଜାତ ପୁଷ୍ପରେ ସଜ୍ଜିତ କରାଯାଇଥିଲା । ଶାଢ଼ୀର ଧଡ଼ିରେ ସ୍ୱର୍ଗରୁ ଝରିତ ବିଦ୍ୟୁତ୍ ପ୍ରବାହରେ ମୟୂର ନୃତ୍ୟକୁ ସନ୍ନିବେଶିତ କରାଯାଇଥିଲା । ଏହି ଶାଢ଼ୀଟିକୁ ବୁଣିବା ପାଇଁ ତାଙ୍କୁ ପ୍ରାୟ ସାଢ଼େ ସାତମାସ ପନ୍ଦର ଦିନ ସମୟ ଲାଗିଥିଲା ଏବଂ ଏଥିପାଇଁ ୧୯୮୪ ମସିହାରେ ସେ ରାଜ୍ୟସ୍ତରୀୟ ପୁରସ୍କାର ପାଇଥିଲେ ।

ଆମେରିକାରେ ଅନୁଷ୍ଠିତ ହେଉଥିବା ଭାରତ ଉତ୍ସବର ଯୋଗଦାନ ଅବସରରେ ଏହି "ଅଭିଜ୍ଞାନମ୍ ଶାକୁନ୍ତଳମ୍" ଶାଢ଼ୀଟିକୁ ସେ ଫିଲାଡେଲ୍‌ଫିଆ ନଗରର "ପୋର୍ଟ ଅଫ୍ ହିଷ୍ଟ୍ରି ମ୍ୟୁଜିୟମରେ" ପ୍ରଦର୍ଶନ କରିଥିଲେ । ସେଠାରେ ଶାଢ଼ୀଟିର ମୂଲ୍ୟ ଟ ୩୬୦୦ ପର୍ଯ୍ୟନ୍ତ ଡାକିବାକୁ ଆଗ୍ରହ ପ୍ରକାଶ କରି ଭାରତୀୟ ସଂଗ୍ରାହକମାନେ ସେଇଟିକୁ ପୁଣି ଭାରତକୁ ଆଣି ଓଡ଼ିଶା ରାଜ୍ୟ ସଂଗ୍ରାହାଳୟରେ ସଂଗୃହୀତ କରି ରଖିଛନ୍ତି ।

୧୯୮୪ ମସିହାରେ ସେ ସତୀ ଅନସୂୟାଙ୍କ ଚରିତ୍ର ଉପରେ ଆଧାରିତ "ପତିପ୍ରାଣା" ନାମକ ପାଟଶାଢ଼ୀ ତିଆରି କରିଥିଲେ । ଏହା ଆମେରିକା ଠାରେ ଭାରତ ଉତ୍ସବ ଅବସରରେ ବିକ୍ରୟ କରାଯାଇଥିଲା ।

ଓଡ଼ିଶାର ଏକ ପୌରାଣିକ ଗାଥା ଲକ୍ଷ୍ମୀ ପୁରାଣରୁ ସଂଗ୍ରହ କରି ୧୯୮୫ ମସିହାରେ ସେ 'ଶ୍ରୀୟା' ନାମକ ଏକ ନମୂନା ତିଆରି କରିଥିଲେ । ଲକ୍ଷ୍ମୀ ଠାକୁରାଣୀ ଚଣ୍ଡାଳ ଘରକୁ ପ୍ରବେଶ କରିଥିବାରୁ ଜଗନ୍ନାଥ ଓ ବଳଭଦ୍ର ତାଙ୍କୁ ଘଉଡ଼ାଇ ଦେଇନ୍ଥନ୍ତି । ତେଣୁ ୧୨ ବର୍ଷ ପର୍ଯ୍ୟନ୍ତ ଦୁର୍ଭିକ୍ଷରେ ପ୍ରପୀଡ଼ିତ ଜଗନ୍ନାଥ, ବଳଭଦ୍ର ପୁଣି ଲକ୍ଷ୍ମୀଦେବୀଙ୍କ ଦ୍ୱାରସ୍ଥ ହୋଇ ତୁଳସୀ ବ୍ରାହ୍ମଣୀ ଦ୍ୱାରା ଉପସ୍ଥିତ ହୋଇଥିବାର ଚିତ୍ର ବାନ୍ଧ-ବୁଣାରେ ଅତି ସୂକ୍ଷ୍ମ ଭାବରେ ଚିତ୍ରିତ କରିଛନ୍ତି । ସେଥିରେ ଲକ୍ଷ୍ମୀଙ୍କ ସ୍ତୋତ୍ର ସଙ୍ଗେ ଲକ୍ଷ୍ମୀ ପୁରାଣରେ ବର୍ଣ୍ଣିତ ପଦ୍ୟ ମଧ୍ୟ ଦିଆଯାଇଛି ।

୧୯୮୮ ମସିହାରେ ଶତଦଳ କମଳରେ ବିରାଜ କରିଥିବା 'ବଳଭଦ୍ର, ଜଗନ୍ନାଥ ଓ ସୁଭଦ୍ରା'ଙ୍କ ମୂର୍ତ୍ତିଚିତ୍ର ବାନ୍ଧ ଓ ବୁଣାରେ ଅତି ସୂକ୍ଷ୍ମ ଭାବରେ ସେ ବୁଣିଥିଲେ । ତ୍ରିମୂର୍ତ୍ତିଙ୍କ ପାଦତଳେ ତାଙ୍କର ଶ୍ଳୋକ ଦିଆଯାଇଥିଲା, ଯାହା କି ଶିଳ୍ପୀ ଗାନ କରୁଛି । ଏହି ନମୂନାରୁ ଗୋଟିଏ ଲେଖାଏଁ ସେ ବରପାଲି ଓ ବୁଢ଼ାପାଲିର ଜଗନ୍ନାଥ ମନ୍ଦିରକୁ ଅର୍ପଣ କରିଛନ୍ତି । ଓଡ଼ିଶା ରାଜ୍ୟ ହସ୍ତଶିଳ୍ପ ନିଗମକୁ ମଧ୍ୟ ଗୋଟିଏ ପ୍ରଦାନ କରିଛନ୍ତି ସେ ।

ଏତଦ୍‌ବ୍ୟତୀତ ସମୟାନୁସାରେ ବହୁ ନମୂନା ତିଆରି କରିବା ସଙ୍ଗେ ସଙ୍ଗେ ବହୁତ ଶାଢ଼ୀ ପଦ୍ମାବତୀ, ଗଜଗମନୀ, ଭାନୁମତୀ, ଇନ୍ଦୁମତୀ, ରତ୍ନାବତୀ, ମୃଗନୟନୀ, କଳିଙ୍ଗରତ୍ନ, ମାନକମଟୋୟା, ମିନାକ୍ଷୀ, ନଳିନୀ ପ୍ରଭା, ପଞ୍ଚକନ୍ୟା, ପ୍ରଗତିରତ୍ନ ଇତ୍ୟାଦି ବୁଣିଛନ୍ତି । ଯାହାକି ନାମାଙ୍କିତ ସମ୍ବଲପୁରୀ ଶାଢ଼ୀ ଭାବରେ ସର୍ବସାଧାରଣରେ ଆଦୃତ ହୋଇଛି ।

୧୯୮୭ ମସିହାରେ ଯୁକ୍ତରାଷ୍ଟ୍ର ଆମେରିକାର ଫିଲାଡେଲଫିଆ ନଗରୀରେ ଭାରତ ସରକାରଙ୍କଦ୍ୱାରା ଆୟୋଜିତ 'ଭାରତ ଉତ୍ସବ'ରେ ଯୋଗଦାନ ନିମିତ୍ତ କଲିକତାର 'କ୍ରାଫ୍‌ଟସ୍ କାଉନ୍‌ସିଲ୍ ଅଫ୍ ୱେଷ୍ଟ ବେଙ୍ଗଲ'ଙ୍କ ନିମନ୍ତ୍ରଣକ୍ରମେ ଅନ୍ୟାନ୍ୟ ପ୍ରଦେଶର ଶିଳ୍ପୀମାନଙ୍କ ଗହଣରେ ଏବଂ ବନ୍ଧୁ ଶ୍ରୀ ସୁଦର୍ଶନ ସାହୁଙ୍କ ସହିତ ସେ ଆମେରିକା ଯାଇଥିଲେ । ସେଠାରେ ସାର୍ଦ୍ଧ ତିନିମାସ ପର୍ଯ୍ୟନ୍ତ 'ପୋର୍ଟ ଅଫ୍ ହିଷ୍ଟ୍ରି' ମ୍ୟୁଜିୟମରେ ସେ ନିଜର କଳା ନୈପୁଣ୍ୟ ପ୍ରଦର୍ଶନ କରିଥିଲେ । ତାହା ଆମେରିକାବାସୀମାନଙ୍କୁ

ବିଶେଷ ଭାବରେ ଆକୃଷ୍ଟ କରିଥିଲା । ସେଠାରେ ସେ ବୁଣିଥିବା 'ଷ୍ଟାଚ୍ୟୁ ଅଫ୍ ଲିବର୍ଟି' ନମୂନାକୁ 'ପୋର୍ଟ ଅଫ୍ ମ୍ୟୁଜିୟମ'ରେ ସଂଗୃହୀତ କରି ରଖିବା ପାଇଁ ମ୍ୟୁଜିୟମର ସେକ୍ରେଟାରୀ ତାଙ୍କ ପାଖରୁ ଗ୍ରହଣ କରିଥିଲେ ।

ଆମେରିକାଠାରେ ତାଙ୍କର ଛଅମାସ ରହଣି ମଧ୍ୟରେ "ଫିଲା-ଡେଲ୍‌ଫିଆ" ନଗର ତରଫରୁ ପୁରାତନ ରାଜଧାନୀ ଠାରେ ନାଗରିକ ତାଙ୍କୁ ସମ୍ବର୍ଦ୍ଧନା ଦେବା ସଙ୍ଗେ ସଙ୍ଗେ ସେଠାକାର ମେୟର କୁଞ୍ଜବାବୁଙ୍କୁ ତାଙ୍କର "ଲିବର୍ଟି ବେଲ୍" ପ୍ରଦାନ କରି ସମ୍ମାନିତ କରିଥିଲେ ।

ଗ୍ରୀନ୍ ମଣ୍ଟ କଲେଜର ମୁଖ୍ୟ ପ୍ରାଧ୍ୟାପକ ମିସେସ୍ ଜେନ୍ ଫେବରଙ୍କ ଆମନ୍ତ୍ରଣ କ୍ରମେ ସେ ତାଙ୍କର ଶିଳ୍ପକଳା ପ୍ରଦର୍ଶିତ କରିବା ପାଇଁ ସେଠାକୁ ଯାଇଥିଲେ । ସେଠାରେ ତାଙ୍କର ହାତତିଆରି ଏକ ନମୂନାକୁ ଉପଯୁକ୍ତ ପ୍ରାପ୍ୟଦେଇ କିଣି କଲେଜ କର୍ତ୍ତୃପକ୍ଷ, କଲେଜରେ ସଂଗୃହୀତ କରି ରଖିବା ପାଇଁ ନେଇଥିଲେ ।

କର୍ଣ୍ଣେଲ୍ ବିଶ୍ୱବିଦ୍ୟାଳୟର ଆମନ୍ତ୍ରଣକ୍ରମେ ସେଠାକୁ ମଧ୍ୟ ସେ ତିନଦିନ ପାଇଁ ତାଙ୍କର କଳାକୃତି ପ୍ରଦର୍ଶିତ କରିବା ପାଇଁ ଯାଇଥିଲେ । ସେଠାରେ ତାଙ୍କ କଳାର ମଧ୍ୟ ଉଚ୍ଚ ପ୍ରଶଂସା କରାଯାଇଥିଲା ।

ଫିଲାଡେଲ୍‌ଫିଆର ପ୍ରଦର୍ଶନୀ ମଣ୍ଡପରେ ଭାରତୀ ସଂସ୍କୃତି ଅନୁସାରେ ମାଘ ଶୁକ୍ଳ ପଞ୍ଚମୀ ଦିନ ସରସ୍ୱତୀ ପୂଜା ଆୟୋଜନ କରା-ହୋଇଥିଲା । କଲିକତା ହାଫ୍‌ଟେସ୍ କାଉନ୍‌ସିଲ୍‌ର ପ୍ରେସିଡେଣ୍ଟ ଜଷ୍ଟିସ୍ ମଞ୍ଜୁଳା ବୋଷ ଓ ସେକ୍ରେଟାରୀ ମିସେସ୍ ରୁବିପାଲ ଚୌଧୁରୀଙ୍କ ଅନୁରୋଧ କ୍ରମେ ସେ ସେଠାରେ ବ୍ରାହ୍ମଣ ହୋଇ ପୂଜା ସମାପନ କରିଥିଲେ । ତାଙ୍କର ନିଷ୍ଠା ଓ ନିରାମିଷ ଭୋଜନ ଦେଖି ସେମାନେ ତାଙ୍କୁ କହିଥିଲେ ମେହେରଜୀ ଏଠାରେ ସମସ୍ତେ ମଦ ମାଂସ ଖାଉଛନ୍ତି, ଆପଣଙ୍କୁ ପୂଜା କରିବାକୁ ପଡ଼ିବ । ସେଠାରେ ବାଧ୍ୟହୋଇ ଧୋତି ପିନ୍ଧି ହଜାର ହଜାର ଆମେରିକାୟ ଏବଂ ଭାରତବାସୀଙ୍କ ସମ୍ମୁଖରେ ତାଙ୍କୁ ପୂଜା କରିବାକୁ ପଡ଼ିଲା, ତେଣୁ ପୂଜାପରେ ସମସ୍ତେ ତାଙ୍କୁ ପଣ୍ଡିତଜୀ ବୋଲି ଡାକିବାକୁ ଲାଗିଲେ ।

ତିନିମାସ ରହଣି ମଧ୍ୟରେ ସେ ବହୁ ଆମେରିକୀୟ ବନ୍ଧୁଙ୍କ ନିମନ୍ତ୍ରଣ ରକ୍ଷାକରି ତାଙ୍କ ଗୃହକୁ ଯାଇଥିଲେ । ବିଶେଷକରି ସେଠାରେ ଥିବା ଭାରତୀୟ ବନ୍ଧୁମାନଙ୍କର ନିମନ୍ତ୍ରଣ ଓ ତାଙ୍କର ସୁବ୍ୟବହାର ସେ ଭୁଲିପାରି ନାହାନ୍ତି । ଆଜି ମଧ୍ୟ ଇଂ. ମନୋରଞ୍ଜନ ପଟ୍ଟନାୟକ, ଡା ମିନତି ପଟ୍ଟନାୟକ, ପ୍ର. ବୀରେନ୍ଦ୍ର ପଟ୍ଟନାୟକ, ଶ୍ରୀମାନ୍ ଇନ୍ଦୁଭୂଷଣ ଦାସ, ଶ୍ରୀମତୀ ନମିତା ଦାସ ପ୍ରଭୃତିଙ୍କର ସ୍ନେହଶ୍ରଦ୍ଧାକୁ ସ୍ମୃତିକରି ସାଇତି ରଖିଛନ୍ତି ନିଜ ପାଖରେ ସେ ।

୧୯୭୮ ମସିହାରେ ତତ୍କାଳୀନ ଓଡ଼ିଶାର ଶିଳ୍ପ ନିର୍ଦ୍ଦେଶକ ଶ୍ରୀମାନ୍ ଅମୂଲ୍ୟରତ୍ନ ନନ୍ଦ ଓ ଶ୍ରୀ ଆର୍ ଏନ୍ ବହିଦାର ମହୋଦୟ ତାଙ୍କୁ ତାଙ୍କର ଶିଳ୍ପକଳା ଉପରେ ଏକ ପୁସ୍ତକ ରଚନା କରିବା ପାଇଁ ପ୍ରେରଣା ଦେଇଥିଲେ ମାତ୍ର ସମୟ ଅଭାବରୁ ଆଜିପର୍ଯ୍ୟନ୍ତ ସେ ପୁସ୍ତକର ରଚନା ସରିନାହିଁ ।

ଅନେକ ସମୟରେ ସ୍କୁଲ, କଲେଜର ଛାତ୍ରଛାତ୍ରୀମାନେ ଶିକ୍ଷକ, ଅଧ୍ୟାପକମାନଙ୍କ ଗହଣରେ ଏହି କଳାକୁ ଅନୁଧ୍ୟାନ କରିବା ନିମିତ୍ତ ତାଙ୍କୁ ଗୃହକୁ ଯାଉଛନ୍ତି ।

ଶ୍ରୀଯୁକ୍ତ ଟି. ସ୍ୱାମୀନାଥନ, ଭାରତର ନିର୍ବାଚନ କମିଶନର ଥିବା ସମୟରେ ତାଙ୍କ ବାସଭବନକୁ ସସ୍ତ୍ରୀକ ଆସି ଏହି ଶିଳ୍ପକଳାରେ ମୁଗ୍ଧ ହୋଇ ତାଙ୍କର ଭୂୟସୀ ପ୍ରଶଂସା କରିଥିଲେ ।

ବିଦେଶରୁ ମଧ୍ୟ ପ୍ରତିବର୍ଷ ଏହି ଶିଳ୍ପକଳାର ଅନୁଧ୍ୟାନ ନିମନ୍ତେ ବହୁ କଳା-ଗବେଷକ ତାଙ୍କ ନିକଟକୁ ଆସୁଛନ୍ତି ।

ଜାନୁୟାରୀ ୧୯୮୮ ରେ ଯୁକ୍ତରାଷ୍ଟ୍ର ଆମେରିକାରୁ ମିସେସ 'ଲିସା ଫ୍ରିସେନ୍'ଙ୍କ ନେତୃତ୍ୱରେ ଏକ ଅଠରଜଣିଆ ପ୍ରତିନିଧିଦଳ ଓଡ଼ିଶାକୁ ଆସି ବରପାଲିଠାରେ ତାଙ୍କ ଗୃହରେ ପ୍ରାୟ ଆଠଦିନ ପର୍ଯ୍ୟନ୍ତ ରହି, ସେମାନେ ତାଙ୍କ କାମର ଅନୁଧ୍ୟାନ କରି, ବହୁତ ନମୁନା ଓ ଶାଢ଼ୀ ପସନ୍ଦ କରି ଆଗ୍ରହ ସହକାରେ କିଣି ନେଇଥିଲେ ।

ଇଟାଲୀରୁ ମିସେସ୍ କାରିଓ ଫେ୍ରାଙ୍କ ସହିତ ମିସେସ୍ ଭାନୁମତୀ ସୁବ୍ରମଣି ଆସି କଳାର ବହୁତ ପ୍ରଶଂସା କରି କେତେକ ଶାଢ଼ୀ ନେଇଥିଲେ ।

୧୯୮୮ ମସିହା ଅଗଷ୍ଟ ମାସରେ ଆମେରିକାର ନ୍ୟୁୟର୍କରୁ ମିସେସ୍ 'ମେଡ଼ରିନ୍ ଟୋଇବେଇ' ଆସି ଖଣ୍ଡିଏ ପାଟଶାଢ଼ୀ ସହିତ 'ଷ୍ଟାଚ୍ୟୁ ଅଫ୍ ଲିବର୍ଟି'ର ଏକ ନମୁନା ବହୁତ ଶ୍ରଦ୍ଧାପୂର୍ବକ ଉପଯୁକ୍ତ ମୂଲ୍ୟ ଦେଇ ଆଗ୍ରହରେ ନେଇଛନ୍ତି ।

୧୯୮୮ ଡିସେମ୍ବର ମାସରେ ସିଙ୍ଗାପୁରରୁ ଏକ ଦମ୍ପତି 'ରିଚର୍ଡ଼ ଏନ ପିଟୋପି' ଏସିଏନ ଓସିଏନକ୍ ଗ୍ରୁପର ମ୍ୟାନେଜିଂ ଡାଇରେକ୍ଟର ତାଙ୍କ ଘରକୁ ସସ୍ତ୍ରୀକ ଆସି ଅନେକ ନମୁନା ନେବା ସଙ୍ଗେ ପାଟ ଶାଢ଼ୀ ମଧ୍ୟ ଶ୍ରଦ୍ଧାପୂର୍ବକ କିଣି ନେଇଛନ୍ତି । ଏଥିପୂର୍ବରୁ ଡେନମାର୍କର ମି. ଏନାଟଗ୍ରଥ ଓଟୋଭିର, ହସ୍ତ ଶିଳ୍ପ ପରାମର୍ଶଦାତା ତାଙ୍କ ଗୃହରେ ପଦାର୍ପଣ କରିଥିଲେ ।

ହଂକଂରୁ ମି. ଡାଇନେ ଏଲ୍ ଉମେମୋଟ 'ରିସାର୍ଚ୍ଚ ଏସୋସିଏଟ ଫର ଇଣ୍ଡିଆ' ମଧ୍ୟ ପଦାର୍ପଣ କରି ତାଙ୍କ କାମରେ ଆକୃଷ୍ଟ ହୋଇ କେତେକ ନମୁନା ତାଙ୍କଠାରୁ ସଂଗ୍ରହ କରି ନେଇଛନ୍ତି ।

ଗତ ଦୁଇବର୍ଷ ହେଲା ଭାରତ ସରକାରଙ୍କ ହସ୍ତଶିଳ୍ପ ମନ୍ତ୍ରାଳୟ ତରଫରୁ ତାଙ୍କ ଗୃହରେ ବାନ୍ଧ କାମରେ ଏକ ଟ୍ରେନିଂ ସେଣ୍ଟର ଖୋଲା ଯାଇଛି ଯହିଁରେ ଦଶ ଜଣ ଛାତ୍ର ମାସକୁ ୧୦୦ ଟଙ୍କା ଲେଖାଏଁ ଷ୍ଟାଇପେଣ୍ଡ ପାଇ ତାଲିମ୍ ନେଉଛନ୍ତି । ଦୁଇବର୍ଷ ପରେ ସେମାନେ ଯୋଗ୍ୟତା ପତ୍ର ସହ ତାଲିମପ୍ରାପ୍ତ ହୋଇ ଏହି କାମରେ ଅଗ୍ରଗତି କରିବେ ।

ଏହି ବାନ୍ଧ ଶିଳ୍ପ ପାଇଁ କୁଞ୍ଜବାବୁଙ୍କ ଅବଦାନ ବର୍ଣ୍ଣନା କଲେ ସରିବ ନାହିଁ । ଭଗବାନଙ୍କୁ ଆଶା କରି ସେ ଏହି ଶିଳ୍ପର ଉନ୍ନତି ପାଇଁ ଚେଷ୍ଟା କରି ଆସିଛନ୍ତି ।



# ସେବକ ମନମୋହନ ଚୌଧୁରୀ

ଡାକ୍ତର ଶୈଳେଶ୍ୱର ନନ୍ଦ

ପୂର୍ବକାଳରୁ ଗଜ, ହରିଣୀ, ଦ୍ରୌପଦୀ, ପ୍ରହ୍ଲାଦ ଆଦିଙ୍କୁ ସଙ୍କଟରୁ ଭଗବାନ ତାରିବାର ପ୍ରସିଦ୍ଧି ରହିଛି । କବିମାନଙ୍କର ଏସବୁ ଉଦାହରଣର ସାମଗ୍ରୀ । ଏମାନେ ହୟ ଅନ୍ୟାୟ ଅତ୍ୟାଚାର ଯୋଗୁଁ ବା ପ୍ରାକୃତିକ ବିପର୍ଯ୍ୟୟ ଯୋଗୁଁ ବିପଦରେ ପଡ଼ିଥିଲେ । ଗଜକୁ କୁମ୍ଭୀର ଧରିଥିଲା । ହରିଣୀ ଶିକାରୀର ଫାନ୍ଦ ଓ ନିଆଁ ଘେରରେ ପଡ଼ିଥିଲା, ଦ୍ରୌପଦୀଙ୍କୁ ମଦାନ୍ଧ ରାଜାଙ୍କ ଦରବାରରେ ବେଇଜତ୍ କରିବା ଚେଷ୍ଟା ହେଉଥିଲା ଓ ପ୍ରହ୍ଲାଦ ତ ଥିଲେ ସତ୍ୟାଗ୍ରହୀ ଶ୍ରେଷ୍ଠ । ଏମାନଙ୍କୁ ତାରିବାର କାହାଣୀ ଯେ ଦୀନ, ଦରିଦ୍ର, ଅତ୍ୟାଚାରିତଙ୍କୁ ମନୋବଳ ଦେବାର ସାଧନ । ମାତ୍ର ଯେଉଁମାନେ ନିଜର କାରସାଦି ଯୋଗୁଁ ଲକ୍ଷ ଲକ୍ଷ ବା କୋଟି କୋଟି ଲୋକଙ୍କର ଦୁଃଖ-ଦୁର୍ଦ୍ଦଶା, ରୋଗବ୍ୟାଧି ଓ ଅନାହାର ମୃତ୍ୟୁର କାରଣ ହେଉଛନ୍ତି ସେମାନେ ନିଜକୁ ମୃଗୁଣୀ, ଗଜେନ୍ଦ୍ର ଓ ପ୍ରହ୍ଲାଦଙ୍କର ସମକକ୍ଷ ମନେକରିବା ଅତି ବିଚିତ୍ର ବ୍ୟାପାର ଓ ତତୋଽଧିକ ବିଚିତ୍ର ବ୍ୟାପାର ହେବ ଯଦି ସେମାନଙ୍କର ଗୁରୁମାନେ ବି ସେମାନଙ୍କୁ ଜେଲ୍ ଓ ଜୋରିମାନାର ସଙ୍କଟରୁ ଉଦ୍ଧାର କରିବାର ଯୋଗ୍ୟ ବୋଲି ବିଚାରୁଥିବେ ।

ଗୁରୁଙ୍କ ବିଷୟରେ ଏ କଥା କହିବାର କାରଣ ଅଛି । ଏ ଦେଶରେ ଓ ବାହାରେ ଏପରି ଅନେକ ଗୁରୁ ଅଛନ୍ତି, ଯେଉଁମାନେ ନିଜକୁ ଭଗବାନ ବୋଲି ଦାବି କରନ୍ତି । ନାନା ପ୍ରକାରର ମ୍ୟାଜିକ୍ ଦେଖାଇ ପ୍ରମାଣ କରିବାକୁ ଉଦ୍ୟମ କରନ୍ତି ଯେ ସେମାନେ ତ୍ରିଲୋକଦର୍ଶୀ ଓ ତ୍ରିକାଳଜ୍ଞ । ଥରେ ଏହିପରି ଜଣେ ଗୁରୁଙ୍କର ଭକ୍ତାଗ୍ରଣୀ ଚେଲାଙ୍କ କଥା ପଢ଼ିଥିଲି ।

ଜଣେ ବନ୍ଧୁ ଯୁକ୍ତି କଲେ ଯେ ଚର୍ଚ୍ଚ ଲୋକ ବି ବ୍ୟବହାର କରିପାରେ; ଛୁରି ବି। ସେଥିରେ ଚର୍ଚ୍ଚର କି ଦୋଷ ? ଏ ଯୁକ୍ତିର ସୀମିତ ଯଥାର୍ଥତା ରହିଛି । ଯୀଶୁ ଦେହ ଛାଡ଼ିବା ପରେ ତାଙ୍କର ବାଣୀକୁ ସାମ୍ରାଜ୍ୟବାଦୀମାନେ ନିଜର କାର୍ଯ୍ୟକଳାପର ସମର୍ଥନରେ ମୋଡ଼ିମାଡ଼ି ବ୍ୟବହାର କଲେ । ତାକୁ ଆଉ ଯୀଶୁ କେମିତି ଅଟକାଇବେ ? ମାତ୍ର ଯେଉଁ ଗୁରୁ ବଞ୍ଚିଛନ୍ତି ଓ ନିଜକୁ ଈଶ୍ୱର ବୋଲି କହୁଛନ୍ତି, ସେ ଜାଣି ପାରିବେ ନାହିଁ, ତାଙ୍କର ଶିଷ୍ୟମାନେ କଏ କ'ଣ କହୁଛନ୍ତି ? ତା ହେଲେ ସେ କି ପ୍ରକାର ଈଶ୍ୱର ?

ଏ ଥିଲି "ହାଟ ବଜାରର ବ୍ରହ୍ମଜ୍ଞାନ"ର ସ୍ରଷ୍ଟା ଶ୍ରୀଯୁକ୍ତ ମନମୋହନ ଚୌଧୁରୀଙ୍କର ଏକ ସ୍ପଷ୍ଟ, ନିର୍ଭୀକ ଅଭିବ୍ୟକ୍ତି । ଜୀବନରେ ସର୍ବସ୍ୱ ଦେଶସେବାରେ ଉତ୍ସର୍ଗ କରି ଜଣେ ସଂଗ୍ରାମୀ ସୈନିକ ଭାବେ ଆଜୀବନ ଭାରତମାତାର ତଥା ଉତ୍କଳ ମାତାର ସେବା କରି ଆସିଛନ୍ତି ।

୧୯୧୫ ମସିହାର ଅକ୍ଟୋବର ଏଗାର ତାରିଖରେ ମନମୋହନ ବାବୁ କଟକ ଠାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ଓ ମାତା ଶ୍ରୀମତୀ ରମା ଦେବୀ । ଦେଶ ଓ ଜାତି ପାଇଁ ସେମାନଙ୍କର ଅବଦାନ ମଧ୍ୟ ଅବିସ୍ମରଣୀୟ । ମହାତ୍ମାଗାନ୍ଧିଙ୍କର ଆଦର୍ଶ ପଛରେ ଧାବମାନ ହେଉଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ସେମାନେ ଥିଲେ ଅଗ୍ରଣୀ । ପିତା ମାତାଙ୍କର ସୁଯୋଗ୍ୟ ପୁତ୍ର ମନମୋହନ ବାବୁ ସେ ଆଦର୍ଶରୁ ବିଚ୍ୟୁତ ହୁଅନ୍ତେ କିପରି ।

ମହାତ୍ମାଗାନ୍ଧିଙ୍କର ଆହ୍ୱାନ କ୍ରମେ ସମଗ୍ର ଦେଶରେ ଦେଖା ଦେଇଥିଲା ବିପ୍ଳବ ଓ ସ୍ୱାଧୀନତା ଆନ୍ଦୋଳନ । ବ୍ରିଟିଶ ଶାସନ ବିରୋଧରେ ବ୍ରିଟିଶପାଠ ପଢ଼ା ବିରୋଧରେ, ବ୍ରିଟିଶ ସାମଗ୍ରୀ ବ୍ୟବହାର ବିରୋଧରେ ଥିଲା ମହାତ୍ମାଜୀଙ୍କର ଏ ଡାକରା । ତାଙ୍କର ଆଦର୍ଶକୁ ଗ୍ରହଣ କରିଥିବା ମନମୋହନ ବାବୁ ବ୍ରିଟିଶ ସ୍କୁଲରେ ଅଧ୍ୟୟନ କରନ୍ତେ କିପରି । ଏଣୁ ସ୍କୁଲ ପାଠପଢ଼ା ହେଲା ନାହିଁ । କିନ୍ତୁ ନିଜେ ନିଜେ ଘରେ ପଢ଼ି ଜ୍ଞାନ ଅର୍ଜନ କରିବାରେ ତାଙ୍କର ଯଥେଷ୍ଟ ଆଗ୍ରହ । ଏଣୁ ଘରୋଇ ଭାବେ ସେ

ମାଟ୍ରିକ ପରୀକ୍ଷା ଦେଲେ, ସେତେବେଳେ ତାଙ୍କୁ ମାତ୍ର ୧୨ ବର୍ଷ ବୟସ । ପାସ ମଧ୍ୟ କଲେ । ତାପରେ ଆଉ କଲେଜ ପାଠ ପଢ଼ିବାର ଇଚ୍ଛା ବା ସମୟ ନଥିଲା । କଲେଜ ପୁଣି—ବ୍ରିଟିଶ କଲେଜରେ ବା କାହିଁକି ସେ ଶିକ୍ଷା କରନ୍ତେ ବରଂ ବାପାଙ୍କୁ ଓ ମା'ଙ୍କୁ ସ୍ୱାଧୀନତା ଆନ୍ଦୋଳନରେ ସାହାଯ୍ୟ କଲେ, ଦେଶ ପାଇଁ କିଛି କରିଥିବାର ତୃପ୍ତି ମିଳିବ । ଏହି ସିଦ୍ଧାନ୍ତ ମନମୋହନ ବାବୁଙ୍କୁ ଏକ ବିଶିଷ୍ଟ ସମାଜସେବୀ କରି ଗଢ଼ି ତୋଳିଲା ।

୧୯୨୨ ଓ ୧୯୨୫ରେ ଗାନ୍ଧିଜୀଙ୍କୁ ଦେଖିବାର ସୁଯୋଗ ପାଇ-ଥିଲେବି ୧୯୨୭ରେ ଗାନ୍ଧିଜୀଙ୍କୁ ଅତି ନିକଟରୁ ସେ ଦେଖିଥିଲେ । ଓଡ଼ିଆ ଭାଷାକୋଷର ପ୍ରଣେତା ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଘରେ କଟକରେ ଗାନ୍ଧିଜୀ ରହିଥାନ୍ତି । ସେତେବେଳେହିଁ ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହେବାର ଶପଥ ସେ ମନେ ମନେ ଗ୍ରହଣ କରିଥିଲେ । ନିଜକୁ ମାତ୍ର ୧୨ ବର୍ଷ ବୟସରେ ଏହି ବିରାଟ ବ୍ୟକ୍ତିତ୍ୱର ପାଦ ତଳେ ନିଜକୁ ସମର୍ପି ଦେଇଥିଲେ ମନମୋହନବାବୁ ।

୧୯୩୦ ନଭେମ୍ବର ୧୪ ତାରିଖ—ନେହେରୁ ଜନ୍ମଜୟନ୍ତୀରେ କାଠଯୋଡ଼ି ନଈବାଲିରେ ବିରାଟ ସଭାର ଆହ୍ୱାନ । ସ୍ୱାଧୀନତା ଆନ୍ଦୋଳନର ଡାକରା । ବ୍ରିଟିଶ ଶାସନ ବିରୋଧୀ ସଭା । ଏହି ସଭାରେ ବ୍ରିଟିଶ ପୋଲିସର ବେତମାଡ଼ ଖାଇ ଗିରଫ ହେଲେ ମନମୋହନ-ବାବୁ ଓ ଆହୁରି ଅନେକ ଯୁବକ । ଅବଶ୍ୟ ପରେ ସେମାନଙ୍କୁ ଛାଡ଼ି ଦିଆଗଲା ।

୧୯୩୨ ଜାନୁଆରୀ ୨୬ କଟକରେ ପ୍ରତି ଛକ ଯାଗାରେ ସ୍ୱାଧୀନତାର ସଙ୍କଳ୍ପ ଉଦ୍‌ଘୋଷିତ ହେଲା । ଚୌଧୁରୀ ବଜାର ଛକ, ବାଲୁବଜାର ଛକ ଓ ବକ୍ସି ବଜାର ଛକରେ ତିନିହଳ ମାତା ପୁତ୍ରଙ୍କୁ ଗିରଫ କରାଗଲା । ରମାଦେବୀ ଓ ମନମୋହନବାବୁ, କିରଣବାଳା ସେନ ଓ ନୀରେନ୍ ସେନଗୁପ୍ତ ଏବଂ ଜାହ୍ନବୀ ଦେବୀ ଓ ଗୌରଗୋପାଳ ଦାସ ଏହି ତିନିଯୋଡ଼ା ମାତାପୁତ୍ର । ପ୍ରଥମେ ମା'ମାନେ ସ୍ୱାଧୀନତାର ସଙ୍କଳ୍ପ ପାଠ କରନ୍ତେ ଗିରଫ ହେଲେ ଓ ପରେ ପରେ ସୁଯୋଗ୍ୟ ସନ୍ତାନ-ମାନେ ମା'ଙ୍କ ହାତରୁ ଖସିପଡ଼ୁଥିବା ସଙ୍କଳ୍ପପତ୍ରକୁ ନିଜ ହାତରେ ଧରି

ପାଠକର ଗିରଫ ହେଲେ । ବ୍ରିଟିଶ ଶାସକଗୋଷ୍ଠୀ ଚକିତ ହୋଇଲେ ସଂକଳ୍ପବଦ୍ଧ ଆନ୍ଦୋଳନରେ ।

ଏ ଥିଲା ପ୍ରଥମ ଜେଲ ଭୋଗିବା ମନମୋହନବାବୁଙ୍କ ଜୀବନରେ । ବିହାରର ହଜାରିବାଗ ଜେଲରେ ୩ ମାସ କାରାବରଣ କଲେ । ସେତେବେଳେ ସେଠି ଅନ୍ୟ ସ୍ୱାଧୀନତା ସଂଗ୍ରାମୀମାନଙ୍କ ମଧ୍ୟରେ ରାଜେନ୍ଦ୍ର ପ୍ରସାଦ, ତାଙ୍କ ସାନଭାଇ ରାଜେଶ୍ୱର ପ୍ରସାଦ, ଜୟପ୍ରକାଶ ନାରାୟଣଙ୍କ ଶ୍ୱଶୁର ବ୍ରଜକିଶୋର ପ୍ରସାଦ, ମହାମାୟା ପ୍ରସାଦ, ସତ୍ୟନାରାୟଣ ସିଂହ ପ୍ରଭୃତି ବିଶିଷ୍ଟ ଜନନାୟକମାନେ କାରାବରଣ କରିଥିଲେ । ଏଣୁ ଏ ବିରାଟ ପ୍ରତିଭାବାନ ବ୍ୟକ୍ତିମାନଙ୍କ ସହ ପରିଚୟ ତାଙ୍କ ଜୀବନର ସଂକଳ୍ପକୁ ଆହୁରି ଦୃଢ଼ୀଭୂତ କଲା ।

୧୯୩୪ରେ ମହାତ୍ମାଗାନ୍ଧିଙ୍କର ଆହ୍ୱାନ କ୍ରମେ ଆରମ୍ଭ ହେଲା ହରିଜନ ପଦଯାତ୍ରା । ପୁରୀ ମନ୍ଦିରରେ ହରିଜନମାନଙ୍କର ପ୍ରବେଶ ପାଇଁ ଥିବା ବାଧା ଓ ବାରଣ ବିରୋଧରେ ଏହି ପଦଯାତ୍ରା ଆରମ୍ଭ ହୋଇଥିଲା । ନେତୃତ୍ୱ ନେଲେ ଆଗ୍ରହୀଂ ହରିହର । ପିତା-ମାତାଙ୍କ ସହ ମନମୋହନ ବାବୁ ଏହି ପଦଯାତ୍ରାରେ ସାମିଲ ହେଲେ । ମହାତ୍ମାଗାନ୍ଧି ଗୋପବନ୍ଧୁ ବାବୁଙ୍କର ଅତି ପ୍ରିୟ ଥିଲେ । ବୋଧହୁଏ ଗୋପବନ୍ଧୁବାବୁ ପୁଅର ଉଚ୍ଚ ଅଭିଳାଷ, ଉଚ୍ଚଶିକ୍ଷା ଓ ଭବିଷ୍ୟତ ବିଷୟରେ ମହାତ୍ମାଗାନ୍ଧିଙ୍କ ସହ ଆଲୋଚନା କରିଥିବେ । ଏଣୁ ପଦଯାତ୍ରା ମଧ୍ୟରେ କୌଣସି ଏକ ପର୍ଯ୍ୟାୟରେ ମନମୋହନବାବୁଙ୍କ କାନ୍ଧରେ ହାତ ରଖି ଚାଲୁ ଚାଲୁ ମହାତ୍ମାଜୀ ପଚାରିଲେ—"କ'ଣ ତୋ'ର ଇଚ୍ଛା ?" ମନମୋହନ ବାବୁ ନିଜର, ବିଜ୍ଞାନ ବିଷୟରେ ଥିବା ଆଗ୍ରହ ତଥା ପଦାର୍ଥବିଜ୍ଞାନ ଓ ଗ୍ରହନକ୍ଷତ୍ର ଗବେଷଣାରେ ଥିବା ଉତ୍ସାହ ବିଷୟରେ ସୂଚନା ଦେଲେ । ଏଣୁ ନିଜେ ଗାନ୍ଧି ତାଙ୍କୁ ସତୀଶଚନ୍ଦ୍ର ଦାସଗୁପ୍ତଙ୍କ ପାଖକୁ କଲିକତା ପଠାଇବାର ସିଦ୍ଧାନ୍ତ ନେଲେ । ସେଠି ରହି ଖଦି କାମ ସହ ବିଜ୍ଞାନ ପଢ଼ାପଢ଼ି ସହଜସାଧ୍ୟ ହେବ, ଏ ବିଶ୍ୱାସ ତାଙ୍କର ଥିଲା ।

ମନମୋହନବାବୁ କଲିକତା ଆସିଗଲେ । ସେଠାରେ ସତୀଶଚନ୍ଦ୍ର ଦାସଗୁପ୍ତଙ୍କ ହରିଜନ ଉଦ୍‌ଯୋଗ୍‌ସାଗରରେ ନର୍ସିଂ ଓ କମ୍ପାଉଣ୍ଡରୀ କାମ

କରିବା ସହିତ ଖଦା କାମ ମଧ୍ୟ କଲେ । ସେତେବେଳେ ଦକ୍ଷିଣ କଲି-କତାରେ ଗ୍ରେଟବ୍ରିଟ୍ ଶହେରୁ ଅଧିକ ଟ୍ୟାନେରୀ ଥିଲା, କେତେକ ଚୀନ୍ ଦେଶୀୟ ଲୋକଙ୍କର, ଆଉ କେତେକ ଭାରତୀୟମାନଙ୍କର । ସେଠାକୁ ଯାଇ ସେମାନଙ୍କ ଠାରୁ ଶିକ୍ଷା ଲାଭକଲେ ମନମୋହନବାବୁ । ତାଙ୍କରି ପ୍ରଚେଷ୍ଟାରେ ସତୀଶବାବୁ "କଲେଜ୍ ଟ୍ୟାନିଂ ଇନ୍ଷ୍ଟିଚ୍ୟୁଟ୍" ବସାଇଲେ । ଭାରତର ବିଭିନ୍ନ ଅଞ୍ଚଳରୁ ଆସିଥିବା ଯୁବକମାନଙ୍କ ସହ କାମ କରି ଜଣେ ଶ୍ରମିକ ଭାବେ ରୋଜଗାରକ୍ଷମ ହେଲେ । ସେହି ସମୟରେ ଲେବର୍ କନ୍ଷ୍ଟିଚ୍ୟୁଏନ୍ସିରୁ ସେ ମଧ୍ୟ ଜଣେ ଭୋଟର ଭାବେ ତାଲିକା-ଭୁକ୍ତ ହେଲେ । ସେହି ସମୟରେ Instituteର Laboratoryରେ କାମ କରିବାର ସୁଯୋଗ ପାଇ ସେ ଅନେକ ଉନ୍ନତ ବୈଜ୍ଞାନିକ ଗବେଷଣାର ଆଭାସ ପାଇପାରି ଥିଲେ । ତାଙ୍କ ନିଜ କଣ୍ଠରେ ସେ ସ୍ୱୀକାର କରନ୍ତି ଯେ ଏମ୍. ଏସ୍. ସି.ରେ ଯାହା Practical କରାଯାଏ । ପ୍ରାୟ ସେ ସମସ୍ତ ମୁଁ ସେଠି ଶିଖିଥିଲି । Practical ସହ Imperial Librraryରୁ ବହି ଆଣି ସେ Theory ମଧ୍ୟ ପଢ଼ି ଗଲେ । ଏଣୁ ବିଜ୍ଞାନ ଓ ବୈଜ୍ଞାନିକ ଚିନ୍ତାଧାରାରେ ସେ ଧୁରୀଣ ହେଲେ ।

ଏତଦ୍ ବ୍ୟତୀତ ସେ Upton Sir Clair, H. G. Wells, George Bernadshaw, Arther Edington, Sir James Jius, Jullian Huxley, Philosophy Methemtion, A. N. White head ଆଦି ଅନେକ ବହି ପଢ଼ି ବିଶେଷ ଜ୍ଞାନ ଅର୍ଜନ କରିଥିଲେ । ଏହା ସହିତ ସୋସିଆଲିଜମ୍ ଓ କମ୍ୟୁନିଜମ୍‌ର ମଧ୍ୟ ଢେର ବହି ସେ ପାଠ କରିଥିଲେ ।

କଲିକତାରୁ ଫେରି ବରିଠାରେ ପିତା ଗୋପବନ୍ଧୁ ଚୌଧୁରୀଙ୍କ ଦ୍ୱାରା ପ୍ରତିଷ୍ଠିତ "ସେବାଘର"ଠାରେ ମନମୋହନବାବୁ ଏକ ଟ୍ୟାନେରୀ ଆରମ୍ଭ କଲେ । ତା' ପୂର୍ବରୁ ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ଦ୍ୱାରା ସେହି-ଠାରେ ଆରମ୍ଭ ହୋଇଥିବା ମହୁମାଛି ପାଳନର ମଧ୍ୟ ପୁନରୁଦ୍ଧାର କଲେ ମନମୋହନବାବୁ । ଜୋତା ସିଲେଇରୁ ଚଣ୍ଡୀପାଠ ସବୁ ହେଲା 'ସେବା ଘର'ର କାର୍ଯ୍ୟ । ପ୍ରଥମ କରି ମନମୋହନବାବୁଙ୍କ ଉଦ୍ୟମରେ ଗଢ଼ାହେଲା "ମଧୁକାର ସମବାୟ ସମିତି ।" ମହୁମାଛି ପାଳନ, ମହୁ ସଂଗ୍ରହର ପ୍ରଚୁର

ସଙ୍ଗେ ସଙ୍ଗେ ସେ ବିଷୟରେ ତାଲିମ ବି ଦିଆଗଲା । ଏହାଛଡ଼ା ଖଦି ସରଞ୍ଜାମ, ଚରଖା ଓ ଅନ୍ୟାନ୍ୟ ଉପକରଣମାନ ତିଆରି କରାଗଲା ସେବାଘର ଠାରେ । ତା' ଦାୟିତ୍ୱରେ ରହିଲେ ମନମୋହନବାବୁ । ବଢ଼େଇ କାର୍ଯ୍ୟରେ ବି ସେ ଥିଲେ ଧୁରନ୍ଧର । ବଢ଼େଇମିସ୍ତ୍ରୀ ମଜୁରି ସେତେବେଳେ ଥିଲା ୫ ଅଣା । ମନମୋହନବାବୁ ଏତେ ପରିମାଣରେ ଖଦି ସରଞ୍ଜାମ ପ୍ରସ୍ତୁତ କରାଇଲେ ଯେ ମିସ୍ତ୍ରୀମାନଙ୍କ ମଜୁରି ବଢ଼ି ହେଲା ଚଉଦ ଅଣା । ବାସ୍ତବରେ ଧନ୍ଦାମୂଳକ ବୃତ୍ତି ଓ ମୌଳିକ୍ ଶିକ୍ଷାର ପ୍ରବର୍ତ୍ତନ କରି ମନମୋହନବାବୁ ଏକ ନୂତନ ଯୁଗର ମାଙ୍ଗଳିକ ଶଙ୍ଖଧ୍ୱନି ବଜାଇଲେ ।

୧୯୩୪ରେ କଂଗ୍ରେସ ସୋସିଆଲିଷ୍ଟ ପାର୍ଟି ଓଡ଼ିଶାରେ ଗଢ଼ାଗଲା । ସେ ଏହାର ସଭ୍ୟ ହେଲେ । ଏହି ପାର୍ଟି ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ "କୃଷକ ସମ୍ମିଳନୀ"ର ଆହ୍ୱାନ ଦେଲା । ମନମୋହନବାବୁ ସକ୍ରିୟଭାବେ ସାହାଯ୍ୟ କଲେ । ୧୯୪୨ରେ ମନମୋହନବାବୁ ବାରି ସେବାଘର ଠାରେ ବିବାହ କଲେ ସୁମିତ୍ରା ବାନାର୍ଜୀଙ୍କୁ । ସେମାନେ ଜାତିର ପିତା ମହାତ୍ମା ଗାନ୍ଧିଙ୍କ ଆଶୀର୍ବାଦ ନେବାକୁ ତାଙ୍କ ଆଶ୍ରମକୁ ଧାଇଁଗଲେ । କିନ୍ତୁ କଠୋର ପିତା ତାଙ୍କୁ ବିଧିବଦ୍ଧ Official Blessings ଦେଲେ ନାହିଁ । କାରଣ ତାଙ୍କର ସେ ଆଶୀର୍ବାଦର ହକ୍‌ଦାର କେବଳ ସେଇ ଦମ୍ପତି, ଯାହାଙ୍କ ମଧ୍ୟରୁ ଜଣେ ହରିଜନ ହୋଇଥିବ । କନ୍ୟା ବା ବର ଯେ କେହି ଜଣେ ହରିଜନ ହେଲେ ସେ ବାପୁଙ୍କର ଆଶୀର୍ବାଦର ଯୋଗ୍ୟ ବିବେଚିତ ହେଉଥିଲା ।

ତଥାପି ଆଶ୍ରମରେ ସମସ୍ତେ ଆନନ୍ଦିତ ହେଉଥିଲେ ଯୁବକ ମନମୋହନଙ୍କର ବିବାହରେ । ବଙ୍ଗୀୟ ଭଦ୍ରମହିଳା ଆଶାଦେବୀ ଓ ସିଂହଳରୁ ଆସିଥିବା ଭଦ୍ରବ୍ୟକ୍ତି ଆର୍ଯ୍ୟନାୟକମ୍ ମନମୋହନ ଓ ସୁମିତ୍ରାଙ୍କ ବିବାହକୁ ସ୍ୱାଗତ କଲେ ଚିନାବାଦାମ ଓ ଗୁଡ଼ର ଭୋଜି କରି । (ଗାନ୍ଧିଙ୍କର ମୌଳିକ ଶିକ୍ଷାର ପ୍ରଥମ ଓ ପ୍ରଧାନ ପ୍ରେରଣାଦାତା ଥିଲେ ଏହି ସିଂହଳବାସୀ ଆର୍ଯ୍ୟନାୟକମ୍ ।

ମନମୋହନବାବୁଙ୍କ ବୈବାହିକ ଜୀବନର ଆରମ୍ଭ ସ୍ୱାଧୀନତା ସଂଗ୍ରାମର ଉତ୍ତପ୍ତ ବାଲୁକାଶଯ୍ୟାରେ । ସେହି ବର୍ଷ ଭାରତଛାଡ଼ ଆନ୍ଦୋଳନ

ଅଗଷ୍ଟ ନ'ର ବିପ୍ଳବ । ସେତେବେଳେ ସେ ସାଲେପୁରଠାରେ ଅବସ୍ଥାପିତ କଟକ ଜିଲ୍ଲାକଂଗ୍ରେସର ସମ୍ପାଦକ । ଏଣୁ ସେଠାରୁ ହିଁ ତାଙ୍କୁ ବନ୍ଦୀ କରାଗଲା । ଇଂରେଜଙ୍କ ଦୃଷ୍ଟିରେ ଏମାନେ ଦୁଷ୍ଟଶ୍ରେଣୀର । ଏଣୁ ସମସ୍ତ ଦୁଷ୍ଟ ସଂଗ୍ରାମୀ ନେତାମାନଙ୍କୁ ଅନୁଗୁଳ ଜେଲକୁ ସ୍ଥାନାନ୍ତରିତ କରାଗଲା, କଟକ ଜେଲରୁ । ସେହି ଦୁର୍ଦ୍ଦାନ୍ତ ଦୁଷ୍ଟ ଜନନାୟକମାନେ ହେଲେ ନବକୃଷ୍ଣ ଚୌଧୁରୀ, ରାଜକୃଷ୍ଣ ବୋଷ, ସୁଧୀର ଘୋଷ, ମଦନମୋହନ ପଟ୍ଟନାୟକ, ନିତ୍ୟାନନ୍ଦ କାନୁନ୍‌ଗୋ, ମନମୋହନ ଚୌଧୁରୀ ଓ ବୈକୁଣ୍ଠନାଥ ମହାନ୍ତି ।

ଏମାନଙ୍କୁ ୧୯୪୪ ମସିହା ପର୍ଯ୍ୟନ୍ତ ରାଜଦ୍ରୋହ ଅପରାଧରେ ବନ୍ଦୀ କରାଗଲା । ୧୯୪୪ରେ ଖଲାସ ହେବାପରେ ପୁଣି ମନମୋହନବାବୁଙ୍କ ଉପରେ ନିଷେଧାଦେଶ ହେଲା ଯେ ସେ ଜଗତସିଂହପୁରରୁ ଅନ୍ୟ କେଉଁଠାକୁ ଯାଇ ପାରିବେନି । ପୁଣି ଆଇନ ଅମାନ୍ୟ କରି ସେ କାରା-ବରଣ କଲେ । ଶେଷରେ ୧୯୪୫ ରେ ମହାତ୍ମାଗାନ୍ଧିଙ୍କୁ ଜେଲରୁ ଖଲାସ ଯେତେବେଳେ କରାଗଲା, ସେତେବେଳେ ସମସ୍ତ ବନ୍ଦୀଙ୍କୁ ମଧ୍ୟ ବିନା ସର୍ତ୍ତରେ ଖଲାସ କରାଗଲା । ମନମୋହନବାବୁ ସେହି ଅବସରରେ ନିଜ ବରି ସେବାଘରକୁ ଫେରିଲେ । କିନ୍ତୁ ସେତେବେଳକୁ ବରି ସେବାଘରକୁ ନଷ୍ଟକରି ଦିଆଯାଇଥିଲା ବ୍ରିଟିଶ ଶାସକ ଏସ୍. ଡି. ଓ ମୁସାହକ ଖାନଙ୍କ ଦ୍ୱାରା । ସେବାଘରର ଲାଇବ୍ରେରୀକୁ ପୋଡ଼ି ଦିଆଯାଇଥିଲା । ଏଣୁ ପୁଣି ଥରେ ସବୁକିଛି ନୂଆ କରି ଆରମ୍ଭ ହେଲା ଗ୍ରାମବାସୀମାନଙ୍କ ସହାୟତାରେ । ମନମୋହନବାବୁ ମୌଳିକ ଶିକ୍ଷା କାର୍ଯ୍ୟକ୍ରମରେ ମନ ଦେଲେ । ସେବା କାର୍ଯ୍ୟକ୍ରମକୁ ବିସ୍ତାରିତ କଲେ । ଏହି ସମୟରେ ଭାରତ ସ୍ୱାଧୀନ ହେଲା । ସମସ୍ତଙ୍କଠାରୁ ଅଧିକ ଆନନ୍ଦିତ ସେଇମାନେ ହେଲେ ଯେଉଁମାନେ ଇଂରେଜର ବେତମାଡ଼, ବୁଟ୍‌ମାଡ଼, ବନ୍ଧୁକ ମାଡ଼ ଠାରୁ ଆରମ୍ଭ କରି ବାରମ୍ବାର କାରାବରଣକୁ ହସି ହସି ଦେଶ ଓ ଜାତି ପାଇଁ ସ୍ୱୀକାର କରିଥିଲେ । ସେମାନଙ୍କ ମଧ୍ୟରେ ମନମୋହନବାବୁ ଅନ୍ୟତମ ।

କିନ୍ତୁ ଏ କଣ ହେଲା, ମାତ୍ର ବର୍ଷେ ନ ପୂରୁଣୁ ମନମୋହନବାବୁ-ଙ୍କର ହୃଦବୋଧ ହେଲା ଯେ କଂଗ୍ରେସ ତାର ସଂକଳ୍ପ, ତାର ଲକ୍ଷ୍ୟରୁ ଦୂରେଇ ଯାଉଛି ଶାସନକ୍ଷମତା ପାଇ । ଏଣୁ ୧୯୪୮ ରେ ସେ କଂଗ୍ରେସ

ଗ୍ଲଣ୍ଡ଼ରେ । ପରେ ସାଡ଼େ ଶହେ ଏକର ଜମି ଉପରେ ସେ ଆରମ୍ଭ କଲେ ତାଙ୍କ କୃଷିବିଜ୍ଞାନର ଗବେଷଣା ।

୧୯୫୧ ରେ ବିନୋବାଙ୍କର ଭୂଦାନ ଓ ଗ୍ରାମଦାନ ଆନ୍ଦୋଳନ ଆରମ୍ଭ ହେଲା । ଏଥିରେ ପ୍ରଥମେ ମନମୋହନବାବୁଙ୍କର ପିତା ଗୋପବନ୍ଧୁ ଚୌଧୁରୀ ଓ ମାତା ରମାଦେବୀ ଯୋଗ ଦେଲେ । ବିନୋବାଙ୍କ ପଦଯାତ୍ରାରେ ସାମିଲ୍ ହେଲେ । ବାପା ବୋଉଙ୍କ ଫେରିବାପରେ ୧୯୫୬ରେ ମନମୋହନବାବୁ ମଧ୍ୟ ଏହି ସର୍ବୋଦୟ ଆନ୍ଦୋଳନରେ ନିଜକୁ ସାମିଲ କଲେ । କୋରାପୁଟଠାରେ ସେହି ବର୍ଷ ବିନୋବାଙ୍କୁ ସାହାଯ୍ୟ କରିବାକୁ ସେ ଧାଇଁଗଲେ । ଗାନ୍ଧିଜୀଙ୍କ ପରେ ବିନୋବାଙ୍କ ହାତଗଢ଼ା ସର୍ବସେବା ସଂଘର ସଭାପତି ରୂପେ ମନୋନୀତ ହେଲେ ମନମୋହନବାବୁ ୧୯୬୨ ଅକ୍ଟୋବରରେ । ୧୯୬୮ ପର୍ଯ୍ୟନ୍ତ ସେ ସଭାପତି ଦାୟିତ୍ୱ ସୁରୁରୁ ରୂପେ ସମାହିତ କଲେ । ଏହି ସର୍ବସେବା ସଂଘ କାର୍ଯ୍ୟକ୍ରମରେ ଭାରତର ବିଭିନ୍ନ ପ୍ରାନ୍ତକୁ ନିଜେ ଯାଉଥିଲେ ଓ ବିଭିନ୍ନ ସ୍ଥାନରେ ଉପୁଜୁଥିବା ସାମାଜିକ ବିଦ୍ୱେଷ ଓ କଳହକୁ ନିଜର ନେତୃତ୍ୱ ସେବା ଓ ସ୍ୱାର୍ଥତ୍ୟାଗର ଆଦର୍ଶରେ ସମାଧାନ କରି ପାରୁଥିଲେ । ସମଗ୍ର ଭାରତର ଏକ ସାମୂହିକ ଉନ୍ନତି ଓ ସମାଜବାଦ ପ୍ରତିଷ୍ଠାପାଇଁ ସେ ତତ୍ପର ହୋଇ ଉଠିଥିଲେ । ରାଉରକେଲାର ହିନ୍ଦୁ ମୁସଲମାନ ଦଙ୍ଗା ପରବର୍ତ୍ତୀ ସମୟରେ ୧୯୬୪ ରେ ସେ ନିଜେ ଧାଇଁ ଯାଇଥିଲେ ସେଠାରେ ଶାନ୍ତି-ମୈତ୍ରୀ ଓ ସଦ୍‌ଭାବର ପୁନରୁଦ୍ଧାର କରିବାକୁ ।

୧୯୭୦ ମେ ମାସରେ ପଶ୍ଚିମ ବର୍ଲିନର ଆହ୍ୱାନ କ୍ରମେ ସେଠାର ଦୂରଦର୍ଶନରେ Religion and Contemporory World ସମ୍ବନ୍ଧରେ ଏକ ଅଭିଭାଷଣ ଦେବାକୁ ଯାଇଥିଲେ । ମେ ମାସ ମଧ୍ୟରେ ସେ ବର୍ଲିନ ଅଞ୍ଚଳ ଇଂଲଣ୍ଡ, ଅଷ୍ଟ୍ରିଆ, ନରୱେ, ସ୍ୱିଡ଼େନ, ଡେନମାର୍କ, ଫ୍ରାନ୍‌ସ, ଇଟାଲୀ, ସ୍ୱିଜରଲ୍ୟାଣ୍ଡ ଓ ଏଥେନସ ବୁଲି ସେଠାର ସାମାଜିକ, ଅର୍ଥନୈତିକ ଓ ସାମଗ୍ରିକ ଚଳାଧାରା ଅନୁଧ୍ୟାନ କରିଥିଲେ ।

୧୯୭୨-୭୩ରେ ସର୍ବୋଦୟ ଆନ୍ଦୋଳନ ପରେ ଜୟପ୍ରକାଶଙ୍କ ଆନ୍ଦୋଳନ ଆରମ୍ଭ ହେଲା । ୧୯୭୩ରେ ଜୟପ୍ରକାଶ କଂଗ୍ରେସର

ଏକଛତ୍ରବାଦ ବିରୋଧରେ ଛାତ୍ରମାନଙ୍କୁ ଏକାଠି କରିବାର ଚିନ୍ତାକରି ମନମୋହନ ବାବୁଙ୍କୁ ଆମନ୍ତ୍ରଣ ଜଣାଇଲେ । ମନମୋହନବାବୁ ବିହାର ଛାତ୍ର ଆନ୍ଦୋଳନର ଜନୈକ ପରିଚାଳକ ଭାବେ ନିଯୁକ୍ତି ପାଇଲେ । ୧୯୭୫ରେ ମିସାରେ ସେ ପୁଣି ଗିରଫ ହୋଇ ବନ୍ଦୀ ହେଲେ । ପୁରୀଠାରେ ବନ୍ଦୀ ଜୀବନଯାପନ କରିବା ସମୟରେ ସେ ସମାଜରେ ଦେଖାଦେଇଥିବା ଦୁର୍ନୀତି ଭ୍ରଷ୍ଟାଚାରର ଅସାମାଜିକ ମନୋଭାବ ଓ ଦେଶଦ୍ରୋହ ଚିନ୍ତା ବିରୋଧରେ ତାଙ୍କ ଲେଖନୀ ଚାଳନା କରି ଲେଖିଲେ "ହାଟବଜାରର ବ୍ରହ୍ମଜ୍ଞାନ" । ଏହା ୧୯୮୨ରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କଲା । ଏହି ଜେଲରେ ଲେଖିଥିବା ଅନ୍ୟାନ୍ୟ ଗ୍ରନ୍ଥ ମଧ୍ୟରେ—"ପରଶମଣିର ସନ୍ଧାନେ" ଏବେ ମଧ୍ୟ ଏକ ଅମୂଲ୍ୟ ବୈଜ୍ଞାନିକ ଗ୍ରନ୍ଥ ଭାବେ ଆଦୃତ । ବିଜ୍ଞାନରେ ଉଚ୍ଚଶିକ୍ଷା ବା ଡ଼ିଗ୍ରୀ ଲାଭ କରିବାର ସୁଯୋଗରୁ ବଞ୍ଚିତ ହୋଇ ସୁଦ୍ଧା ଏତେ ସରଳ ଓ ପ୍ରାଞ୍ଜଳ ଭାବେ ପଦାର୍ଥ ବିଜ୍ଞାନର ତଥ୍ୟାବଳୀକୁ ପ୍ରକାଶ କରିବାରେ ସେ ଅଦ୍ୱିତୀୟ ।

ପଦାର୍ଥ ବିଜ୍ଞାନ ଅନୁଷ୍ଠାନର ନିର୍ଦ୍ଦେଶକ ତ୍ରିଲୋଚନ ପ୍ରଧାନ ତାଙ୍କ 'ପରଶମଣିର ସନ୍ଧାନେ' ପୁସ୍ତକ ବିଷୟରେ ମତପ୍ରକାଶ କରି କହନ୍ତି—"କଲେଜ ଗ୍ୟାଲେରୀ ଏବଂ ପରୀକ୍ଷାଗାରର ଟେବୁଲ ଠାରୁ ଦୂରରେ ରହି ଲେଖକ ବିଜ୍ଞାନ ଅନୁଶୀଳନ କରିଛନ୍ତି । ଏକ ଅନନ୍ୟସାଧାରଣ ଆତ୍ମ-ପ୍ରଚେଷ୍ଟା ମୂଳକ ଉଦ୍ୟମ । ଏପରି ଉଦ୍ୟମ ସୁସଂହତ ନହେଲେ ଅନେକ ସମୟରେ ଶିକ୍ଷାର୍ଥୀ ପାଇଁ ବିଭ୍ରାନ୍ତିକର ହୋଇଉଠେ । କିନ୍ତୁ ମନମୋହନ ଚୌଧୁରୀଙ୍କ କ୍ଷେତ୍ରରେ ତାହା ହୋଇନି । ନିତିଦିନିଆ ଜୀବନ ଏବଂ ପରିପାର୍ଶ୍ୱର ପ୍ରକୃତିରୁ ସାମଞ୍ଜସ୍ୟ ବାଛି ସେ ପଦାର୍ଥ ବିଜ୍ଞାନର ତଥ୍ୟଗୁଡ଼ିକର ନିର୍ଯ୍ୟାସ ଗ୍ରହଣ କରିଛନ୍ତି । ତେଣୁ ଯେତେବେଳେ ସେ ଅନ୍ୟ ନିକଟରେ ନିଜର ଶିକ୍ଷାର ଭାବଧାରାକୁ ପ୍ରକାଶ କରିଛନ୍ତି, ଅବିକଳ ନିଜେ ବୁଝିଥିବା ଭଙ୍ଗୀରେ ହିଁ ପ୍ରକାଶ କରିଛନ୍ତି । ଲେଖକଙ୍କର ଏଇ ମୌଳିକ ବ୍ୟଞ୍ଜନାର ଶୈଳୀ ପୁସ୍ତକଟିର ଛନ୍ଦେ ଛନ୍ଦେ ପରିସ୍ଫୁଟ ।"

ଏତଦ୍‌ବ୍ୟତୀତ ମନମୋହନ ବାବୁ ଜେଲରେ ଲେଖିଥିବା ତାଙ୍କର ଏକ ଆତ୍ମଜୀବନୀ ଏ ଯାବତ୍ ପ୍ରକାଶ ପାଇନି । ଯାହାହେଉ ଜଣେ ଚିନ୍ତାନାୟକ ଭାବୁକ, ତଥା ଲେଖକ ଭାବେ ସେ ନିଜକୁ ପ୍ରତିଷ୍ଠିତ କରି

ପାରନ୍ତି ଏକଥା ସ୍ୱୀକାର୍ଯ୍ୟ । ତାଙ୍କର ଅନ୍ୟଏକ ପୁସ୍ତକ "ଇଉରୋପ ଯାତ୍ରୀର ଡ଼ାଏରୀ" ଭ୍ରମଣ ବୃତ୍ତାନ୍ତ ହେଲେ ମଧ୍ୟ ଏକ ପ୍ରଶାନ୍ତିଦାୟକ ପୁସ୍ତକ । ସର୍ବଭାରତୀୟ ସ୍ତରରେ ପ୍ରକାଶିତ ସର୍ବସେବା ସଂଘର ପାକ୍ଷିକ ପତ୍ରିକା VIZIL ର ସେ ମୁଖ୍ୟ ସମ୍ପାଦକ ଏବଂ 'ସର୍ବୋଦୟ' ଓ 'ଗ୍ରାମସେବକ' ପତ୍ରିକାର ମଧ୍ୟ ସେ ସମ୍ପାଦକ । ସମ୍ପାଦକ ଭାବେ ଭାରତବାସୀଙ୍କ ପାଇଁ ତାଙ୍କର ଓଜସ୍ୱିନୀ ଅଭିବ୍ୟକ୍ତି ନିର୍ଭିକ ବାକ୍‌ପଟୁତା ପାଠକ ମନରେ ଶିହରଣ ଆଣେ । ଆଣେ ଉନ୍ମାଦନା, ଅଭୂତ ପ୍ରେରଣା ।

୧୯୭୭ରେ ସର୍ବୋଦୟ ଆନ୍ଦୋଳନ ଦୁଇଭାଗରେ ବିଭକ୍ତ ହେଲା । ବିନୋବାଙ୍କର ରାଜନୈତିକ ଉଦାସିନତା, ଦୁର୍ନୀତି-ଭ୍ରଷ୍ଟାଚାରର ପ୍ରତି ନୀରବ ସହନଶୀଳତା ହେତୁ କେତେକ ସର୍ବୋଦୟ କର୍ମୀ ଜୟପ୍ରକାଶଙ୍କ ନେତୃତ୍ୱକୁ ସ୍ୱୀକାର କଲେ । ସେମାନଙ୍କ ମଧ୍ୟରେ ଥିଲେ ଅନ୍ୟତମ ମନମୋହନବାବୁ । ସେମାନେ ନାଗରିକ ଅଧିକାର ଉପରେ ଆକ୍ରମଣକୁ ସହ୍ୟ କରିନେବା ଅପରାଧ ବୋଲି ମଣିଲେ । ଜାତୀୟ ଚରିତ୍ର ଗଠନର ବ୍ରତ ଶପଥ ନେଲେ ।

ମନମୋହନବାବୁ ୧୯୬୯ରୁ ୭୧ ଯାଏଁ ଖଦୀ କମିଶନର ମେମ୍ବର ଥାଇ ବିଭିନ୍ନ ନୂତନ ପ୍ରକାର ଚରଖାର ପ୍ରବର୍ତ୍ତନ କରିଥିଲେ । ଏବେ ମଧ୍ୟ କଟକରେ ତାଙ୍କ ବାସଭବନ ଠାରେ ବିଭିନ୍ନ ପ୍ରକାର ଚରଖା ଦେଖିବାକୁ ମିଳେ । ଜୟପ୍ରକାଶ ନାରାୟଣ, ଶଙ୍କରରାଓ ଦେଓ ଓ ନବକୃଷ୍ଣ ଚୌଧୁରୀଙ୍କ ଦ୍ୱାରା ବନାରସଠାରେ ପ୍ରତିଷ୍ଠିତ Gandhian Institute of Studies ର Board of Mangement ର ସେ ମେମ୍ବର ଅଛନ୍ତି । ଏହି Institute ଗାନ୍ଧି ଆନ୍ଦୋଳନ ସହ ସାମାଜିକ ବିଜ୍ଞାନର ସମନ୍ୱୟ କରିବା କ୍ଷେତ୍ରରେ ଅଗ୍ରଣୀ ।

ସେ ଉତ୍କଳ ସର୍ବୋଦୟ ମଣ୍ଡଳର ସଭାପତି ମଧ୍ୟ ଥିଲେ । ଏବେ ମଧ୍ୟ ଉତ୍କଳ ଗାନ୍ଧି ସ୍ମାରକନିଧିର ସଭାପତି ଓ ଉତ୍କଳ ସର୍ବୋଦୟ ଶିଳ୍ପସଂଘକମିଟିର ସଭାପତି ଅଛନ୍ତି । ସେ ଏବେ ମଧ୍ୟ ସର୍ବଭାରତୀୟ P. U. C. L (People Union for Civil Liberty) ଓ C.F.D (Citizen for Democracy) ର ସଭ୍ୟ ଅଛନ୍ତି ।

ତାଙ୍କ ଜୀବନ ଜ୍ଞାନ, ବିଜ୍ଞାନ ତଥା ସାହିତ୍ୟ ସଂସ୍କୃତିର ଏକ ସମନ୍ୱୟ । ଏବେ ମଧ୍ୟ ଏକାକୀ ବସି ନିଜ ତିଆରି ଟେଲିସକୋପ ସାହାଯ୍ୟରେ

ଗ୍ରହ ନକ୍ଷତ୍ରଙ୍କର ଗତିବିଧି ଲକ୍ଷ୍ୟ କରିବା, ପକ୍ଷୀମାନଙ୍କର ଗତିବିଧି ଲକ୍ଷ୍ୟ କରିବା, ବଗିଚାକାମ, ମହୁମାଛି ପାଳନ, ଚିତ୍ରାଙ୍କନ, ଶୂନ୍ୟକଳା ସୃଷ୍ଟି ଆଦିରେ ନିଯୋଜିତ। ବିଭିନ୍ନ ଭାଷା ପ୍ରତି ଥିବା ଆଗ୍ରହ ହେତୁ ସେ ବିଶ୍ୱର ପ୍ରାୟ ୭ଟି ଭାଷାକୁ ନିଜ ଆୟତ୍ତାଧୀନ କରିପାରିଛନ୍ତି।

ଲେଖକ ଏକ ମନୋରମ ବାସନ୍ତୀ ସନ୍ଧ୍ୟାରେ ଏହି ମହାତ୍ମା ସମାଜସେବୀ-ଜନନାୟକଙ୍କ ନିକଟରେ ପହଞ୍ଚିବାର ସୁଯୋଗ ପାଇଥିଲି। ପ୍ରାୟ ୩ ଘଣ୍ଟାର ବାର୍ତ୍ତାଳାପ ମଧ୍ୟରେ ତାଙ୍କର ଆନ୍ତରିକ ବ୍ୟବହାର ବାସ୍ତବିକ ତାଙ୍କୁ ବିମୋହିତ କରିଥିଲା। ମଝିରେ ମାତ୍ର ଦଶ ପନ୍ଦର ମିନିଟ ପାଇଁ ସେ ପ୍ରାର୍ଥନା କରିବାକୁ ଉଠିଯାଇଥିଲେ - ଯାହା ତାଙ୍କର ନିତ୍ୟ ନୈମିତ୍ତିକ କାର୍ଯ୍ୟକ୍ରମ। ବିଭିନ୍ନ ଆଲୋଚନା ମାଧ୍ୟମରେ ତାଙ୍କର ଜୀବନର କେତେକ ମଧୁର ବିଧୁର ଅଧ୍ୟାୟ ଉନ୍ମୋଚିତ ହୋଇଥିଲା। ମୋର ଶେଷ ପ୍ରଶ୍ନ ଥିଲା ମହାତ୍ମାଗାନ୍ଧି, ବିନୋବା ଓ ଜୟପ୍ରକାଶଙ୍କ ସମ୍ବନ୍ଧରେ ଆପଣଙ୍କ ଅଭିମତ। ସେ କହିଥିଲେ—

"ପୃଥିବୀର ବର୍ତ୍ତମାନ ପରିସ୍ଥିତିରେ ମୋହନ ଦାସ କରମଚାନ୍ଦ ଗାନ୍ଧିଙ୍କର ଚିନ୍ତାଧାରା ଆଦର୍ଶ ହିଁ ଏକମାତ୍ର ସମାଧାନର ପନ୍ଥା ବୋଲି ମୋର ଧାରଣା ହେଉଛି। ଭାରତର ସାଧାରଣ ଜନତାକୁ ଭାବପ୍ରବଣ କରାଇବାରେ ଗାନ୍ଧୀଙ୍କ ପରି ଦ୍ୱିତୀୟ କେହି ହୋଇନି ବା ହୋଇ ପାରେନା।

ବିନୋବା ଥିଲେ ପ୍ରଖର ଧୀ-ସମ୍ପନ୍ନ, ପ୍ରତିଭାବାନ, ବୁଦ୍ଧିଶାଳୀ ବ୍ୟକ୍ତି। ମାନବ ସଭ୍ୟତାର ପ୍ରାଚୀନ ପରମ୍ପରାରେ ତାଙ୍କର ଯଥେଷ୍ଟ ପାଣ୍ଡିତ୍ୟ ଥିଲା। ସର୍ବୋଦୟ ଆନ୍ଦୋଳନର ସେ ଥିଲେ କର୍ଣ୍ଣଧାର। କିନ୍ତୁ ପରବର୍ତ୍ତୀ ପର୍ଯ୍ୟାୟରେ ରାଜନୀତି ପ୍ରତି ଉଦାସୀନ ରହି - ଅନ୍ୟମାନଙ୍କୁ ମଧ୍ୟ ଉଦାସୀନ ରହିବା ପାଇଁ ପରାମର୍ଶ ଦେଇ ସମାଜରେ ଦେଖା ଦେଇଥିବା ଦୁର୍ନୀତି ଓ ଭ୍ରଷ୍ଟାଚାର ପ୍ରତି ନିସ୍ପୃହ ରହିବା ତାଙ୍କର ଏକ ଦୁର୍ବଳତା ବୋଲି ମୋର ମନେ ହୁଏ।

ଜୟପ୍ରକାଶ ୧୯୩୯ରେ କଟକରେ ଆମ ଘରେ ରହିଥିଲେ। ତାଙ୍କର ନିର୍ଭିକ ତଥା ସାମଗ୍ରିକ ଦୃଷ୍ଟିକୋଣ ମତେ ଆକୃଷ୍ଟ କରିଥିଲା।

ଗାନ୍ଧିଜୀଙ୍କର ମୌଳିକ ଚିନ୍ତାଧାରା ସହ ସାମଞ୍ଜସ୍ୟ ଓ ବିଶ୍ୱଚେତନାରେ ଐକ୍ୟ ମନୋଭାବ ଜୟପ୍ରକାଶଙ୍କ ନିକଟରେ ପରିଦୃଷ୍ଟ ହେଉଥିଲା । ଗାନ୍ଧୀଜୀଙ୍କ ଭଳି ସେବାଭାବ, ମଦର ଟେରେସାଙ୍କ ଭଳି କରୁଣା ଭାବ ଓ ଅନ୍ୟ ଦିଗରେ ଜର୍ଜ ୱାସିଂଟନଙ୍କ ଭଳି ତଥା ଶିବାଜୀଙ୍କ ଭଳି ଯୋଦ୍ଧା ମନୋ-ଭାବ ତଥା ସ୍ୱାଭିମାନର ରକ୍ଷା ଦିଗରେ ନେତୃତ୍ୱ ଓ ଯୁଦ୍ଧ ପରିଚାଳନା ଶକ୍ତି ତାଙ୍କ ନିକଟରେ ଯଥେଷ୍ଟ ଥିଲା । ତାଙ୍କ ଲଢ଼େଇ ପାଇଁ ନିଷ୍ଠା ଓ ସଂକଳ୍ପ ମତେ ଅଭିଭୂତ କରିଥିଲା । ତାଙ୍କ ଅଧ୍ୟୟନ, ବିଦ୍‌ବତ୍ତା, ଜ୍ଞାନ ଶିକ୍ଷିତ ସମାଜକୁ ଅବିଳମ୍ବେ ପ୍ରୋତ୍ସାହିତ କରିବାକୁ ସମର୍ଥ ଥିଲା । ଏଣୁ ମୁଁ ତାଙ୍କୁ ଗୁରୁଭାବରେ ଗ୍ରହଣ କରିଥିଲି ।

ବାସ୍ତବିକ ମନମୋହନ ଚୌଧୁରୀଙ୍କର ତ୍ୟାଗ, ସେବା, ଦେଶ-ପ୍ରୀତି, ନେତୃତ୍ୱ ସାମ୍ପ୍ରତିକ ସମାଜ ପାଇଁ ଏକ ଆଦର୍ଶ । ତାଙ୍କର ବୈଜ୍ଞାନିକ ହୃଦୟ—ସାହିତ୍ୟିକ ମନୋଭାବ, ରାଜନୈତିକ ଆଦର୍ଶବାଦ ଯୁବପ୍ରାଣକୁ ସବୁ ସମୟରେ ଯେ ଅନୁପ୍ରାଣିତ କରିବ ଏଥିରେ ସନ୍ଦେହର ଅବକାଶ ନାହିଁ ।



# ପ୍ରତିକୃତିର ଯାଦୁକର ବିପ୍ରଚରଣ ମହାନ୍ତି

ଶ୍ରୀ ସୁଭାଷଚନ୍ଦ୍ର ମହାନ୍ତି

ଦୁନିଆ ମରଣଶୀଳ । ପ୍ରତି ମୁହୂର୍ତ୍ତରେ କେତେ ଜୀବ, କେତେ ମଣିଷ ବିଦାୟ ନେଇ ଯାଉଛନ୍ତି । କେତେ ଜନ୍ମ ନେଉଛନ୍ତି ଏହି ଧରା ବକ୍ଷରେ । ସମସ୍ତେ ମନେ ରହନ୍ତି ନାହିଁ । ଯୋଗଜନ୍ମା କେତେ ଜଣଙ୍କୁ କାଳ କାଳ ପାଇଁ ଜାତି ମନେ ରଖେ । ସେହି ମୁଷ୍ଟିମେୟ କେତେଜଣ ମହାନ ବ୍ୟକ୍ତିଙ୍କର ସ୍ମୃତିଚାରଣ କରି ଭବିଷ୍ୟତ ବଂଶଧରମାନେ ଆଗେଇ ଯାଆନ୍ତି । ଗ୍ରାମର ବଣମଲ୍ଲୀ ନୀରବରେ ପ୍ରସ୍ଫୁଟିତ ହୋଇ ମହକାଇ ଦିଏ ଗାଁ ଗୋଠାକୁ । ଉପଯୁକ୍ତ ପାରିପାର୍ଶ୍ୱିକ ବାତାବରଣ ଓ ସୁବିଧା ସୁଯୋଗ ପାଇଲେ ବିଶ୍ୱଦରବାରକୁ ତାହା ମହକାଇ ଦିଏ । ଶ୍ରୀଯୁକ୍ତ ବିପ୍ରଚରଣ ମହାନ୍ତି ଏହାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

କଟକ ଜିଲ୍ଲାର ବିରୂପା ନଦୀ କୂଳରେ ନାନପୁର ବୋଲି ଗୋଟିଏ ଗାଁ । ଏହି ଗାଁଟି ବଡ଼ଚଣା ଥାନାର ଦାଳିଚନ୍ଦ୍ରପୁର ପୋଷ୍ଟଅଫିସ ଅଧୀନରେ ଅବସ୍ଥିତ । ସେହି ଗାଁର ଏକ ରକ୍ଷଣଶୀଳ କରଣ ପରିବାରରେ ଜନ୍ମ ନିଅନ୍ତି ବିପ୍ରଚରଣ । ଜନ୍ମ ୧୯୨୭ ମସିହା ନଭେମ୍ବର ୨୫ ତାରିଖ । ଉତ୍କଳ ଜନନୀଙ୍କର କଳାକ୍ଷେତ୍ରରେ ଏହି ଦିନଟି ଏକ ଶୁଭ ମୁହୂର୍ତ୍ତ । କିଏ ଜାଣିଥିଲା ସେହିଦିନଟି ହେବ କଳାବିଭବ ପରିପୂର୍ଣ୍ଣ ଲୁପ୍ତଗୌରବ ଉତ୍କଳର ଏକ ଉଜ୍ଜ୍ୱଳ ଭବିଷ୍ୟତର ସଙ୍କେତ ।

କେନ୍ଦୁଝରଗଡ଼ ଆରିବନ୍ଧ ମହାନ୍ତି ସେତେବେଳେ ମୟୂରଭଞ୍ଜ ମହାରାଜାଙ୍କ ଅଧୀନରେ ପୁଲିସ ଡ଼. ଏସ୍. ପି. ରୂପେ କାର୍ଯ୍ୟ କରୁଥାନ୍ତି । ଅନେକ ଦିନ ଅତିବାହିତ ହୋଇଗଲେ ମଧ୍ୟ ତାଙ୍କର ପୁତ୍ର ସନ୍ତାନ ହେଲା ନାହିଁ । ଶେଷରେ ଶୁକ୍ଲେଶ୍ୱରରୁ ଦତ୍ତହରି ମହାନ୍ତିଙ୍କୁ ପୋଷ୍ୟପୁତ୍ର ରୂପେ ସେ ଗ୍ରହଣ କଲେ । ପିତା ଦତ୍ତହରି ଓ ମାତା ଶୁକଦେଈଙ୍କର ହେଲା ଦୁଇଟି ପୁତ୍ର । ବଡ଼ଭାଇ ବିପ୍ରଚରଣ ଓ ସାନଭାଇ ଗୁରୁଚରଣ ପିତା-ମାତାଙ୍କ ସ୍ନେହରେ ଦିନକୁ ଦିନ ବଢ଼ିବାକୁ ଲାଗିଲେ । ପିତା ଦତ୍ତହରିଙ୍କର ଅନେକ ଭୂସମ୍ପତ୍ତି ଥିଲା । ତେଣୁ ସେ କୃଷି ଉପରେ ନିର୍ଭରକରି ପରିବାରର ଭରଣ ପୋଷଣ କରୁଥିଲେ ।

ପିତାଙ୍କର ନିରଳସ ଧର୍ମପ୍ରାଣ ଜୀବନରେ, ଅନୁପ୍ରାଣିତ ହେଲେ ବିପ୍ରଚରଣ । ସେ ବାଲ୍ୟକାଳରୁ ମଧ୍ୟ ନିଃସ୍ୱାର୍ଥପର ଭାବରେ ପର ସେବା କରିବା ପାଇଁ ପଛେଇ ନଥିଲେ । ସାଙ୍ଗ ପିଲାଙ୍କ ସଙ୍ଗେ ଖେଳୁଥିଲେ । ବିରୂପା ନଈ କୂଳରେ ବୁଲୁଥିଲେ । ଗ୍ରାମ ତଥା ବିରୂପା ନଦୀ ତଟର ପ୍ରାକୃତିକ ସୌନ୍ଦର୍ଯ୍ୟରେ ସେ ଅଭିଭୂତ ହୋଇ ଯାଉଥିଲେ । ପ୍ରାକୃତିକ ଦୃଶ୍ୟରାଜି ତାଙ୍କ ମନରେ ଏକ ପ୍ରକାର ଚିତ୍ରପଟ ସୃଷ୍ଟି କରୁଥିଲା । ନାନପୁର ନିକଟରେ କୁଶୁପୁର ଗାଁ । କୁଶୁପୁରରେ ଥିବା ନନ୍ଦକିଶୋର ବିଦ୍ୟାମନ୍ଦିରରେ ସେ ଅଧ୍ୟୟନ କଲେ । ନାନପୁରଠାରୁ ପ୍ରାୟ ୫ କିଲୋମିଟର ଦୂରରେ ଅବସ୍ଥିତ ଲଳିତଗିରିକୁ ସାଙ୍ଗମାନଙ୍କ ସହିତ ସେ ବରାବର ଯାଆନ୍ତି । ଲଳିତଗିରିର ବୌଦ୍ଧକୀର୍ତ୍ତି ତାଙ୍କୁ ବହୁଭାବରେ ଆକୃଷ୍ଟ କରୁଥିଲା । ଲଳିତଗିରିର ମୂର୍ତ୍ତିରାଜି ତାଙ୍କ ମନରେ ସୃଷ୍ଟି କଲା କୁହୁକ ।

ସେହି ମୂର୍ତ୍ତିକୁ ଦେଖି ପ୍ରଥମେ ମାଟି ଚକଟି ଛୋଟ ଛୋଟ ମୂର୍ତ୍ତିମାନ ଗଢ଼ିବାକୁ ଆରମ୍ଭ କଲେ ସେ । ପିତାମାତାଙ୍କ ଭୟରୁ ରକ୍ଷା ପାଇବା ପାଇଁ ମୂର୍ତ୍ତିଗୁଡ଼ିକୁ ସେ ଧାନଗଦା ତଳେ ଲୁଚାଇ ରଖୁଥିଲେ । ପ୍ରତିଭା ଲୁଚି ରହେ ନାହିଁ । କୌଣସି ବାଧା ମାନେ ନାହିଁ । ବିପ୍ରଚରଣଙ୍କ କଳା-ନୈପୁଣ୍ୟ ଲୁଚିରହିଲା ନାହିଁ । ସେ ପ୍ରଶଂସିତ ହେଲେ ତାଙ୍କର କଳା ପାଇଁ ।

ତାଙ୍କର ଶୈଶବ ଅତିବାହିତ ହେଲା ନାନା ଦୁଃଖ ଶୋକ, କ୍ରୀଡ଼ା କୌତୁକ, ହାସ୍ୟ ଆନନ୍ଦ ମଧ୍ୟ ଦେଇ । ଗାଁର ପାଣିପବନରେ ତାଙ୍କର ଜୀବନ ଗଠିତ । ତେଣୁ ଜୀବନବ୍ୟାପୀ ସେ ଗାଁକୁ ଭୁଲି ନାହାନ୍ତି ।

ଗାଁରୁ ହିଁ ସେ ପାଇଛନ୍ତି ବଞ୍ଚିରହିବାର ପ୍ରୋତ୍ସାହନ । ଓଡ଼ିଆ ଜାତି, ଓଡ଼ିଆ ଧର୍ମ, ଓଡ଼ିଆ ପରିବେଶ, ଓଡ଼ିଆ ବସନଭୂଷଣ, ଅଳଙ୍କାର, ଓଡ଼ିଆର ପର୍ବପର୍ବାଣି ଚାଲିଚଳନରେ ଯେଉଁ ଚାରୁକଳା ପରିପୂର୍ଣ୍ଣ ତାର ପରିଚୟ ସେ ନିଛକ ଭାବରେ ପାଇ ପାରିଥିଲେ । ସେହି ପ୍ରେରଣାରେ ସେ କୃଷକର ଗୋଟିଏ ପ୍ରତିମୂର୍ତ୍ତି ମାଟିରେ ଗଢ଼ିବାକୁ ଆରମ୍ଭ କଲେ । ସେଥିରେ ସେ କୃଷକ ମୁଖର ଅବିକଳ ଭାବଭଙ୍ଗୀକୁ ପରିସ୍ଫୁଟ କରିବାକୁ ଚେଷ୍ଟା କରିଥିଲେ । ନିଛକ ରୂପ ଦେବା ତାଙ୍କ ଶୈଳୀର ଏକ ବୈଶିଷ୍ଟ୍ୟ । କୁଶୁପୁରର ଶିଳ୍ପୀ ବିମ୍ବାଧର ବର୍ମାଙ୍କ ଠାରୁ ମଧ୍ୟ ଅନେକ ପ୍ରେରଣା ପାଇଥିଲେ ସେ ।

ଜେଜେବାପାଙ୍କ ଅମଳରୁ ମୟୂରଭଞ୍ଜରେ ମଧ୍ୟ ତାଙ୍କର ଘର ଓ ଜମିଥିଲା । ତାର ତତ୍ତ୍ୱନେବା ପାଇଁ ପିତା ଦଇତାରି ମହାନ୍ତି ସେଠାକୁ ଯାଆନ୍ତି । ପିତାଙ୍କ ସଙ୍ଗରେ ବିପ୍ରଚରଣ ମଧ୍ୟ ଅନେକ ଥର ସେଠାକୁ ଯାଇଯାଆନ୍ତି ।

ଥରକର ଘଟଣା । ସେହି ଘଟଣା ତାଙ୍କ ଜୀବନରେ ଏକ ଅଧ୍ୟାୟ ସୃଷ୍ଟି କରିଥିଲା । ନନ୍ଦକିଶୋର ବିଦ୍ୟାମନ୍ଦିରରୁ ସେ ମାଟ୍ରିକ ପାଶ୍ କରି ସାରି ଥାଆନ୍ତି । ସେହିଥର ବାପାଙ୍କ ସଙ୍ଗରେ ସେ ଯାଇଥାଆନ୍ତି ମୟୂରଭଞ୍ଜ । ସେହି ସମୟରେ ମୟୂରଭଞ୍ଜ ରାଜା ଗୋଟିଏ ଚାରୁକଳାର ପ୍ରଦର୍ଶନୀ କରୁଥାଆନ୍ତି । ତାର ପରୀକ୍ଷକ ରୂପେ ଆସିଥାଆନ୍ତି କଲିକତା ଆର୍ଟ କଲେଜର ଅଧ୍ୟକ୍ଷ ଅତୁଲ ବୋଷ ଓ ସେ ସମୟର ପଲିଟିକାଲ୍ ଏଜେଣ୍ଟ । ଏ ଖବର ପାଇ ବିପ୍ରଚରଣଙ୍କ ମନରେ ଏକ ପ୍ରକାରର ଉତ୍ସାହ ଦେଖାଦେଲା । ପିତାଙ୍କ ଅନୁମତି ନେଇ ଗାଁରେ ପୂର୍ବରୁ ତିଆରି କରିଥିବା ମାଟିର କୃଷକ ମୂର୍ତ୍ତିଟି ଆଣି ପ୍ରଦର୍ଶନୀରେ ଦାଖଲ କଲେ ।

ତୁଳସୀ ଦୁଇ ପତ୍ରରୁ ବାସିଲା ପରି ବିପ୍ରଚରଣଙ୍କ ପ୍ରତିଭା ଗାଁରୁ ବିକଶିତ ହୋଇଥିଲା । ସେତେବେଳକୁ ତାଙ୍କର ବୟସ ପ୍ରାୟ ୧୫ ବର୍ଷ ।

କୃଷକର ପ୍ରତିମୂର୍ତ୍ତି ଦେଖି ଅତୁଲ ବୋଷ ଓ ପଲିଟିକାଲ ଏଜେଣ୍ଟ ଅଭିଭୂତ ହୋଇ ଯାଇଥିଲେ । ମୂର୍ତ୍ତିଟି ପ୍ରଥମ ସ୍ଥାନ ଅଧିକାର କଲା ପ୍ରଦର୍ଶନୀରେ । ସମସ୍ତେ ଜାଣିବାକୁ ଚାହିଁଲେ କୃଷକ ମୂର୍ତ୍ତିର ଶିଳ୍ପୀ କିଏ ? ଅତୁଲ ବୋଷ ଓ ପଲିଟିକାଲ ଏଜେଣ୍ଟ ମଧ୍ୟ ଶିଳ୍ପୀଙ୍କୁ ଦେଖିବାକୁ ଇଚ୍ଛା କଲେ । ୧୫ ବର୍ଷର ପିଲା ବିପ୍ରଚରଣଙ୍କୁ ଦେଖି ସେମାନେ ନିଜକୁ ବିଶ୍ୱାସ କରିପାରିଲେ ନାହିଁ । ସେମାନେ କହିଲେ—"ଏ କ'ଣ ଓଡ଼ିଶାର ସେହି ବାରବର୍ଷର ପିଲା ଧରମା ?" ସେମାନଙ୍କ ଆଶୀର୍ବାଦ ବିପ୍ରଚରଣଙ୍କୁ ବଡ଼ ହେବାପାଇଁ ପାଥେୟ ଯୋଗାଇଲା ।

ଅତୁଲ ବୋଷ ବିପ୍ରଚରଣଙ୍କୁ କଲିକତାର ଆର୍ଟ କଲେଜରେ ପଢ଼ିବା ପାଇଁ ଉପଦେଶ ଦେଲେ । ଏଥିପାଇଁ ଅର୍ଥ ସେ କେଉଁଠୁ ପାଇବେ ? ଅତୁଲ ବୋଷ ଓ ପଲିଟିକାଲ ଏଜେଣ୍ଟଙ୍କ ପରାମର୍ଶ ଅନୁଯାୟୀ ମୟୂରଭଞ୍ଜ ଷ୍ଟେଟ ତାଙ୍କର ସମସ୍ତ ଖର୍ଚ୍ଚ ବହନ କରିବାକୁ ରାଜି ହେଲେ । ମାତ୍ର କୌଣସି କାରଣରୁ ତାକୁ ଗ୍ରହଣ କରିବା ପାଇଁ ରାଜିହେଲେନି ବିପ୍ରଚରଣ ।

ଏଥିପାଇଁ ବହୁ ଶୁଭକାଂକ୍ଷୀଙ୍କ ପରାମର୍ଶ ଲୋଡ଼ିଲେ । ସେତେବେଳେ ଇଂରେଜ ସରକାରଙ୍କ ରାଜତ୍ୱ । ସରକାରଙ୍କୁ ଶାସନରେ ସାହାଯ୍ୟ କରିବା ପାଇଁ ଦୁଇଜଣ ପରାମର୍ଶଦାତା ଥାଆନ୍ତି । ଗୋଖଲେ ଥାଆନ୍ତି ଓଡ଼ିଶାର ନାନା ଉନ୍ନତିମୂଳକ ଯୋଜନାରେ ପରାମର୍ଶ ଦେବାପାଇଁ ଓ ମାରୁଡ଼୍ ଥାଆନ୍ତି ଅର୍ଥ ବିଷୟରେ ପରାମର୍ଶ ଦେବାପାଇଁ । ଶେଷରେ ବହୁ କଷ୍ଟରେ ବିପ୍ରଚରଣ ଯାଇ ଦେଖାକଲେ ଗୋଖଲେଙ୍କୁ । ଗୋଖଲେ ବିପ୍ରଚରଣଙ୍କ ଏ ଅଳ୍ପ ବୟସରୁ ଅଦମ୍ୟ ଉତ୍ସାହ ଓ ସାହସ ପାଇଁ ଅତି ଆନନ୍ଦିତ ହେଲେ ଓ ସେ ଯାଇ ଡ଼ି.ପି.ଆଇ.ଙ୍କୁ ଦେଖା କରିବାକୁ ଉପଦେଶ ଦେଲେ ।

ଏଥର ଯାଇ କେବଳ ସେ ଡ଼ି. ପି. ଆଇ. ଶରତଚନ୍ଦ୍ର ତ୍ରିପାଠୀଙ୍କୁ ଦେଖା କରି ନଥିଲେ, ସେତେବେଳର ରେଭେନ୍ସା କଲେଜର ପ୍ରିନ୍ସିପାଲ ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ପରିଜା, ସ୍ୱାମୀ ବିଚିତ୍ରାନନ୍ଦ ଦାଶ, ଭାଇସ୍ ଚାନ୍ସେଲର ଚିନ୍ତାମଣି ଆଚାର୍ଯ୍ୟ ସମସ୍ତଙ୍କୁ ଜଣକ ପରେ ଜଣଙ୍କୁ ମଧ୍ୟ ଦେଖା କଲେ । କିନ୍ତୁ ଦୁଃଖର କଥା ସେତେବେଳେ ଡ଼ି. ପି. ଆଇଙ୍କ ହାତରେ

ସେଭଳି କର୍ତ୍ତୃ କ୍ଷମତା ନ ଥିଲା, ଯାହା ଫଳରେ କି ତାଙ୍କୁ କଲିକତା ପଠାଇବାରେ ସାହାଯ୍ୟ କରିପାରି ଥାଆନ୍ତା । ବିପ୍ରଚରଣଙ୍କୁ ରେଭେନ୍ସା କଲିଜିଏଟ୍ ସ୍କୁଲରେ ଡ୍ରଇଂ ଶିକ୍ଷକ ରୂପେ ନିଯୁକ୍ତ ହେବା ପାଇଁ ସେ କହିଲେ । ବିପ୍ରଚରଣଙ୍କର ଅଗାଧ ମନବଳଥିଲା । ଶିକ୍ଷା କରିବାର ପ୍ରବଳ ଇଚ୍ଛା ମନରେ ତାଙ୍କର ଜମାଟ ବାନ୍ଧିଥିଲା । ତେଣୁ ଶିକ୍ଷକ ହେବା ପାଇଁ ସେ ମନା କରିଦେଲେ । ସେ କହିଲେ, "ମୋ ଶିକ୍ଷାତ ସରିନି ମୁଁ ଶିକ୍ଷକ ହେବି କ'ଣ ?"

ଶେଷରେ ବନ୍ଧୁ ଚନ୍ଦ୍ରାକର ଡ଼. ପି. ଆଇ ମହାଶୟ ତାଙ୍କୁ ସେହିପରି ଏକ କ୍ଷମତା ଦେବା ପାଇଁ ସରକାରଙ୍କୁ ଅନୁରୋଧ କରି ଲେଖିଲେ । ଚେଷ୍ଟାର ଅବକାଶ ନାହିଁ । ପରିଶ୍ରମର ଶେଷ ନାହିଁ । ବିପ୍ରଚରଣ ପୁନର୍ବାର ଗଲେ ଗୋଖଲେଙ୍କ ପାଖକୁ । ସେତେବେଳକୁ ଡାକରେ ଗୋଖଲେ ଡ଼. ପି. ଆଇଙ୍କ ଅନୁରୋଧପତ୍ର ପାଇ ନଥାନ୍ତି । ତଥାପି ବିପ୍ରଚରଣଙ୍କ ନିକଟରୁ ସମସ୍ତ ବୃତ୍ତାନ୍ତ ଶୁଣି ଓ ତାଙ୍କ ନିକଟରୁ ଗୋଟିଏ ନକଲ ଦେଖି ସେ ସଙ୍ଗେ ସଙ୍ଗେ ଡ଼. ପି. ଆଇଙ୍କୁ ସେହି ପ୍ରକାରର ଏକ କ୍ଷମତା-ଦେବା ପାଇଁ ଯତ୍ନଶୀଳ ହେଲେ ।

ଡ଼.ପି.ଆଇ. କ୍ଷମତା ପାଇଲା ପରେ ଗୋଟିଏ ବତ୍ତୁବତ୍ତି ପରୀକ୍ଷା କରିବା ପାଇଁ ବିଜ୍ଞାପନ ଦେଲେ । ସେତେବେଳେ ୧୯୪୭ ମସିହା । ରାଧାନାଥ ଟ୍ରେନିଂ କଲେଜର ଆର୍ଟ ଶିକ୍ଷକ ଥାଆନ୍ତି ବସନ୍ତ ପଣ୍ଡା । ସେ ପରୀକ୍ଷକ ରୂପେ ନିଯୁକ୍ତି ପାଇ ଥାଆନ୍ତି । ସେତେବେଳେ ବିପ୍ରଚରଣ ଭାବୁ ଥାଆନ୍ତି ଓ ମନେ ମନେ ହସୁଥାଆନ୍ତି । ଲୀଳାମୟଙ୍କର କେତେ ଆଉ ପରୀକ୍ଷା ବାକି ? ସେତେବେଳେ ଏପରି କଳାର ଆଦର ଅଧିକ ନଥିଲା । ଏ କଳାରେ ପେଟ ପୋଷିବା ଏକ ଦୁଃସହ ବ୍ୟାପାର ଥିଲା । ତେଣୁ ସାରା ପରିବାର, ବନ୍ଧୁ, ସାଙ୍ଗସାଥିମାନେ ତାଙ୍କୁ ନିରୁତ୍ସାହ କରୁଥାଆନ୍ତି । କିନ୍ତୁ ତାଙ୍କର କଳାପ୍ରୀତ ହୃଦୟର ଆବେଗକୁ କେହି ଅଟକାଇ ପାରିଲେ ନାହିଁ । ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କଲିକତା ଆର୍ଟ କଲେଜରେ ପଢ଼ିବା ପାଇଁ ସେ ଯୋଗ୍ୟ ବିବେଚିତ ହେଲେ । ତଥାପି ତାଙ୍କ ଜୀବନରେ ପରୀକ୍ଷା ସରିଲା ନାହିଁ । କଲିକତାରେ ଆର୍ଟ ମହାବିଦ୍ୟାଳୟରେ ନାମ ଲେଖାଇବା ପାଇଁ ମଧ୍ୟ ପ୍ରତିଯୋଗିତାର ସମ୍ମୁଖୀନ ହେବାକୁ ପଡ଼ିଥିଲା ତାଙ୍କୁ । ତଥାପି

ଏହି ପ୍ରତିଭାବାନ ବ୍ୟକ୍ତିତ୍ୱର ଅନ୍ତରାଳରେ ଯେଉଁ ଶିଳ୍ପୀସୁଲଭ ପ୍ରତିଭା ଲୁକ୍‌କାୟିତ ଥିଲା ତାହା ପରୀଭବ ସ୍ୱୀକାର କରିନଥିଲା । ପ୍ରବେଶିକା ପରୀକ୍ଷାରେ ସର୍ବଶ୍ରେଷ୍ଠ ଛାତ୍ର ରୂପେ ବିବେଚିତ ହୋଇ ୧୯୪୭ ମସିହା ଅଗଷ୍ଟ ୧୩ ତାରିଖରେ କଲିକତାର ଆର୍ଟ ମହାବିଦ୍ୟାଳୟରେ ନାମ ଲେଖାଇଲେ ।

ଛାତ୍ରାବାସରେ ରହି ସେ ନିଜ ଶିକ୍ଷାରେ ଯତ୍ନବାନ ହୋଇ ଥାଆନ୍ତି । ଅଳ୍ପଦିନ ରହଣି ମଧ୍ୟରେ ଜୀବନର ଆଉ ଏକ ପରୀକ୍ଷାର ସେ ସମ୍ମୁଖୀନ ହେଲେ । ସେତେବେଳକୁ ଦ୍ୱିତୀୟ ମହାସମର ଘଟିଯାଇଥାଏ । ହଠାତ୍ ଦିନେ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଗଣ୍ଡଗୋଳ ଲାଗିଲା । ମହାବିଦ୍ୟାଳୟଟି ମୁସଲମାନ ବସ୍ତି ମଧ୍ୟରେ ଥିଲା । ଉପୁରେ ମହା-ବିଦ୍ୟାଳୟ ଛାତ୍ରାବାସ ବନ୍ଦ ହୋଇଗଲା । ଛାତ୍ରମାନେ ସେ ସ୍ଥାନ ଛାଡ଼ି ପଳାଇ ଗଲେ । ନିଷ୍ଠାପର ସାଧନାରତ ବିପ୍ରଚରଣ ଭୀରୁତାର ପରିଚୟ ନ ଦେଇ ବରଂ ଏହାର ମୁକାବିଲା କରିବାକୁ ମନସ୍ଥ କଲେ । ସମସ୍ତଙ୍କ ପରି ସେ ପଳାଇଗଲେ ନାହିଁ । ଛାତ୍ରାବାସ ନିକଟରେ ରହି ତାଙ୍କୁ ୭/୭ ଦିନ ଉପବାସରେ କଟାଇବାକୁ ପଡ଼ିଲା । ବିପ୍ରଚରଣଙ୍କର ଏତାଦୃଶ କଷ୍ଟ ଦେଖି ଦୟାର୍ଦ୍ର ଅଧ୍ୟକ୍ଷ ଅତୁଲ ବୋଷ ତାଙ୍କୁ ନେଇ ନିଜ ଘରେ ସ୍ଥାନ ଦେଲେ । ତାଙ୍କର ଘରର ଗୋଟିଏ କୋଠରୀରେ ରହି ବିପ୍ରଚରଣ ଚିନ୍ତା କଲେ ତାଙ୍କର ଭବିଷ୍ୟତ ।

ସେ ଜଣେ କର୍ମବୀର । ସାରାଜୀବନ ସେ କଳା ପାଇଁ ତାଙ୍କ ଜୀବନ ଉତ୍ସର୍ଗ କରିବାକୁ ପ୍ରସ୍ତୁତ । 'ଉଦ୍‌ଯୋଗେନ ପୁରୁଷ ସିଂହମ୍ ।' ଉଦ୍‌ଯୋଗରେ ପ୍ରତ୍ୟେକ କାର୍ଯ୍ୟ ଅଳ୍ପ ବିହୁତେ ସାଧିତ ହୁଏ । ହାତ ତାଙ୍କର ଚଳ ଚଞ୍ଚଳ କର୍ମମୁଖର ହୋଇ ଉଠିଲା । କାଦୁଅ ଚକଟି ବସିଗଲେ ମୂର୍ତ୍ତି ଗଠନରେ । ସୁଦୂର କଲିକତାରେ ଥାଇ ମଧ୍ୟ ସେ ଗାଁ କଥା ଭୁଲି ପାରି ନ ଥିଲେ । ଗାଁର ପ୍ରତ୍ୟେକ ଛବି ତାଙ୍କ ମାନସ-ପଟରେ ଉଦ୍ଭାସିତ ହେଉଥିଲା । ଓଡ଼ିଆ ସଂସ୍କୃତିକୁ ରୂପ ଦେବା ପାଇଁ ସେ ମନସ୍ଥ କଲେ । ତାଙ୍କ ମନରେ ଭାସି ଉଠିଲା ପ୍ରତ୍ୟହ କିପରି ଓଡ଼ିଆ ଘରର ବୋହୂ ତୁଳସୀ ଚଉଁରାମୂଳେ ସନ୍ଧ୍ୟାବତୀ ଜାଳେ । ପରିବାରର ମଙ୍ଗଳ ମନାସେ । ଏହି ଚିନ୍ତକଳ୍ପକୁ ନିର୍ଜୀବ ମାଟିରେ ରୂପ

ଦେବାକୁ ଚେଷ୍ଟା କଲେ ସେ । ମୂର୍ତ୍ତିଟି ଗଢ଼ିବାରେ କିପରି ଯେ ତାଙ୍କର ସମସ୍ତ ଅତିବାହିତ ହୋଇଯାଏ ତାହା ସେ ନିଜେ ମଧ୍ୟ ଜାଣି ପାରନ୍ତି ନାହିଁ । ଶୋଇଲେ ସେହି ଦୃଶ୍ୟ ସେ ସ୍ୱପ୍ନରେ ଦେଖନ୍ତି । ଅଧା ତିଆରି କରିଥିବା ମୂର୍ତ୍ତିକୁ ଗଢ଼ିବାରେ ପରଦିନ ଲାଗିପଡନ୍ତି ନୂତନ ଉଦ୍ଦୀପନାରେ । ଧୀରେ ଧୀରେ ମୂର୍ତ୍ତିଗଢ଼ା ସରିଆସିଲା—ସନ୍ଧ୍ୟା ହେବାମାତ୍ରେ ଓଡ଼ିଆ ଘର ବୋହୂର ମନୋଭାବ ସେହି ମୂର୍ତ୍ତିମୁଖରେ ଫୁଟାଇବାକୁ ସେ ଆପ୍ରାଣ ଉଦ୍ୟମ କଲେ । ଦିନେ ଅଧ୍ୟକ୍ଷ ଅତୁଲ ବୋଷ ଏ ମୂର୍ତ୍ତିର ଜୀବନ୍ତ ରୂପ ଦେଖି ନିଜେ ବିଶ୍ୱାସ କରିପାରିଲେ ନାହିଁ ଯେ ଗୋଟିଏ ଅଳ୍ପବୟସ୍କ ପିଲାର ହାତରେ ଏତେ କଳାନୈପୁଣ୍ୟର ଗୂଢ଼ତ୍ୱ ଥାଇପାରେ ବୋଲି ।

ଇତିମଧ୍ୟରେ ସହରରେ ସ୍ୱାଭାବିକ ପରିସ୍ଥିତି ଦେଖାଦେଲା । ଜୀବନଯାତ୍ରା ଗତାନୁଗତିକ ସ୍ରୋତରେ ଆସିଗଲା । ଆର୍ଟ ମହାବିଦ୍ୟାଳୟ ପୁନର୍ବାର ଖୋଲିଲା । ଛାତ୍ରାବାସକୁ ଧୀରେ ଧୀରେ ପିଲାମାନେ ଫେରିଲେ । ଆନନ୍ଦରେ ବିପ୍ରଚରଣ ଶିକ୍ଷାରେ ରତ ହେଲେ । ଅତୁଲ ବୋଷ ଖୁବ୍ ଭଲ ପାଉଥା'ନ୍ତି ବିପ୍ରଚରଣଙ୍କୁ । ତାଙ୍କୁ ନାନାପ୍ରକାର ସାହାଯ୍ୟ ମଧ୍ୟ ସେ କରୁଥା'ନ୍ତି । ସେହି ବର୍ଷ ଅର୍ଥାତ୍ ୧୯୪୭ ମସିହାରେ କଲିକତାର ଏକାଡେମି ପକ୍ଷରୁ ଗୋଟିଏ କଳା ପ୍ରଦର୍ଶନୀ (Art Exhibition) ହେଉଥାଏ । ସେଥିରେ ନାମକରା କଳାକାରମାନଙ୍କର ଚିତ୍ର, ମୂର୍ତ୍ତି ଇତ୍ୟାଦି ସ୍ଥାନ ପାଇଥାଏ । ସେହି ପ୍ରଦର୍ଶନୀକୁ 'ତୁଳସୀ ଚଉରା ମୂଳେ ଓଡ଼ିଆ ବୋହୂର ସନ୍ଧ୍ୟା କାଳରେ ସନ୍ଧ୍ୟାବନ୍ଦି' ଦେଉଥିବା ମୂର୍ତ୍ତିଟିକୁ ପଠାଇବା ପାଇଁ ଅଧ୍ୟକ୍ଷ ଉପଦେଶ ଦେଲେ । ଅଧ୍ୟକ୍ଷଙ୍କ ଉପଦେଶ ମାନି ସେ ମୂର୍ତ୍ତିଟିକୁ ପଠାଇଲେ । ସେ ମୂର୍ତ୍ତି ପାଇଁ ସମସ୍ତଙ୍କ ପ୍ରିୟପାତ୍ର ହୋଇ ପାରିଥିଲେ ଓ ଶେଷରେ ତାଙ୍କୁ ଗୋଟିଏ ଆଡ଼ିସନାଲ ଷ୍ଟୁଡେଣ୍ଟ ପ୍ରାଇଜ୍ ଦିଆ ଯାଇଥିଲା ।

୧୯୪୭ ମସିହାରେ ଓଡ଼ିଶାରେ ମଧ୍ୟ କଳା ପ୍ରଦର୍ଶନୀ (All Orissa Art Exhibition) ହୋଇଥିଲା । ଏଥିର ଉଦ୍ୟୋକ୍ତା ଥିଲେ ଶ୍ରୀ ମୁରଲୀଧର ଟାଲି, ଶ୍ରୀ ବସନ୍ତ ପଣ୍ଡା ପ୍ରମୁଖ ସୁପରିଚିତ କଳାକାରମାନେ । ସେଠାକୁ ମଧ୍ୟ ପୂର୍ବ ମୂର୍ତ୍ତିଟିକୁ ପଠାଇ ଦ୍ୱିତୀୟ ପୁରସ୍କାର ପାଇବାର ଗୌରବ ଅର୍ଜନ କରିଥିଲେ ବିପ୍ରଚରଣ ।

କଲକତା ଆର୍ଟ ମହାବିଦ୍ୟାଳୟରେ ସେ ୧୯୪୭ ମସିହାରୁ ୧୯୫୧ ପର୍ଯ୍ୟନ୍ତ ଦୀର୍ଘ ପାଞ୍ଚବର୍ଷ ଶିକ୍ଷା କାଳ ମଧ୍ୟରେ ଭାରତ ସରକାରଙ୍କର ଲଳିତ କଳା ଏକାଡେମୀ ତରଫରୁ କ୍ରମାଗତ ଭାବେ ଗୋଟିଏ ସ୍ୱର୍ଣ୍ଣପଦକ ପାଇବାର ସୌଭାଗ୍ୟ ସେ ଲାଭ କରିଥିଲେ ।

ଏହାବ୍ୟତୀତ କଲକତାର ଏକାଡେମୀ ଅଫ ଫାଇନ ଆର୍ଟ ତରଫରୁ ୧୯୪୭ ଓ ୧୯୪୮ ମସିହାରେ କ୍ରମାଗତ ଭାବରେ ପ୍ରଥମ ଓ ଦ୍ୱିତୀୟ ସ୍ଥାନ ଅଧିକାର କରି ପୁରସ୍କୃତ ହୋଇଥିଲେ ।

ପରବର୍ଷ ଅର୍ଥାତ୍ ୧୯୪୯ ମସିହାରେ ବମ୍ବେର ଲୋଟସ୍ ଟ୍ରଷ୍ଟ ଏୱାର୍ଡ଼ ପାଇବାର ସୌଭାଗ୍ୟ ସେ ଅର୍ଜନ କରିଥିଲେ । ୧୯୫୦ ମସିହାରେ କଲକତା ବିଶ୍ୱବିଦ୍ୟାଳୟର ଶତବାର୍ଷିକୀ ପାଳନ ହେଉଥାଏ । ଏହି ଉତ୍ସବର ପ୍ରଦର୍ଶନୀରେ ସେ ଅଂଶଗ୍ରହଣ କରି ପ୍ରଥମ ସ୍ଥାନ ଅଧିକାର କରିଥିଲେ ଓ ସ୍ୱର୍ଣ୍ଣପଦକ ପାଇବାର ଗୌରବ ଅର୍ଜନ କରିଥିଲେ ।

ଏହିଭଳି ଶିକ୍ଷା ସଙ୍ଗେ ସଙ୍ଗେ ସେ ନାନା ଯଶ ଅର୍ଜନ କରି ସୁପରିଚିତ ହେବାକୁ ଲାଗିଲେ । ୧୯୫୧ ମସିହା ଠାରୁ ତାଙ୍କର ଶିକ୍ଷା ଶେଷ ହେଲା । ତଥାପି ଶିକ୍ଷା ପିପାସା ତାଙ୍କର ମେଣ୍ଟିଲା ନାହିଁ । ସେହି ବର୍ଷ ସେଠାରେ ପ୍ରଥମ କରି ଖୋଲିଥିବା ପୋଷ୍ଟ ଗ୍ରାଜୁଏଟ ଟିଚିଙ୍ଗ ସ୍କିମ୍‌ରେ ଦୁଇବର୍ଷ ପଢିବା ପାଇଁ ନାମ ଲେଖାଇଲେ । ସେଠାରେ ସେ ୧୯୫୧ ରୁ ୧୯୫୩ ପର୍ଯ୍ୟନ୍ତ ଅଧ୍ୟୟନ କଲେ ।

୧୯୫୩ ମସିହାରେ ତାଙ୍କର ଶିକ୍ଷା ଶେଷ ହେଲା । ଶିକ୍ଷାର ସମୟ ଯେତେ ଯେତେ ସରି ଆସୁଥାଏ ଟାଁ ଚଣ୍ଡୀ, ସାଙ୍ଗସାଥୀ ତଥା ନିଜ ମାତୃଭୂମିର ଉନ୍ନତି ପାଇଁ ମନ ତାଙ୍କର ସେତେ ବ୍ୟାକୁଳ ହେଉଥାଏ । "ଏ ମନ ପାଞ୍ଚୁଥାଏ ଯାହା କାଳେ ହାଜତ ହୁଏ ତାହା" । ସେହି ବର୍ଷ ଶୈଳବାଳା ମହିଳା ମହାବିଦ୍ୟାଳୟରେ ଓଡ଼ିଆପ୍ରାଣ ମଧୁସୂଦନ ଦାସ-ଙ୍କର ଗୋଟିଏ ପ୍ରତିମୂର୍ତ୍ତି ନିର୍ମାଣ ପାଇଁ ସ୍ଥିର ହୋଇଥାଏ । ଏଥିପାଇଁ ଜଣେ ଓଡ଼ିଆ ଶିଳ୍ପୀର ଆବଶ୍ୟକତା ଅନୁଭବ କରି ଡକ୍ଟର ହରେକୃଷ୍ଣ ମହତାବ, ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ, ଶ୍ରୀଯୁକ୍ତ ରାଧାନାଥ ରଥ ଶିଳ୍ପୀ ବିପ୍ରଚରଣଙ୍କୁ ଅନୁରୋଧ କରିଥିଲେ । ସେ ପ୍ରଥମେ ହେଲେ କଲିକତାରେ

ରହି ନିର୍ମାଣ କରିଦେବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । କିନ୍ତୁ ପରେ କେତେକ କାରଣ ଯୋଗୁ ସେ କଟକରେ ଆସି ନିର୍ମାଣ କରିବା ପାଇଁ ସ୍ଥିର କଲେ । ଜୀବନ-କର୍ମଭୂମିର ପ୍ରଥମ ସୋପାନରେ ପ୍ରଥମେ ଉତ୍କଳର ବରପୁତ୍ର ମଧୁସୂଦନ ଦାସଙ୍କ ପ୍ରତିମୂର୍ତ୍ତି ଗଠନର ଆହ୍ୱାନ ନିଜ ଜନ୍ମଭୂମିରୁ ପାଇ ତାଙ୍କ ମନ ଆନନ୍ଦରେ ନାଚି ଉଠିଲା । ଶିଳ୍ପୀ ହାତ ତାଙ୍କର ଏକ ଅନ୍ତର୍ନିହିତ ଉତ୍ସାହ ଉଦ୍ଦୀପନାରେ ଶିହରିତ ହେଲା ।

ଯାଜପୁରର ସର୍ଯ୍ୟମଣି ଦାସ ସେତେବେଳେ ସବ୍ ଜଜ୍ ଥାଆନ୍ତି । ସେହି ଅମାୟିକ ବ୍ୟକ୍ତିଙ୍କ ସାହାଯ୍ୟରେ ତାଙ୍କର ଚୌଧୁରୀ ବଜାରସ୍ଥ ରଙ୍ଗଭବନ ଗୃହରେ ନିଜର ଷ୍ଟୁଡ଼ିଓ ଆରମ୍ଭ କଲେ ବିପ୍ରଚରଣ । କଟକ ସହର ଏହିଠାରେ ହେଲା ତାଙ୍କର ପ୍ରଥମ କର୍ମର ଆରମ୍ଭ । ରଙ୍ଗଭବନରେ ରହି ଶଙ୍ଖ-ମଲମଲ ପଥର ଦେହରେ ମଧୁବାବୁଙ୍କୁ ରଙ୍ଗ ଦେବାକୁ ଚେଷ୍ଟା କଲେ ପ୍ରାଣଦେଇ । ମନରୁ ତାଙ୍କର ସମସ୍ତ ରୁଚି ନିଗାଡ଼ି, ଦେହରୁ ତାଙ୍କର ସମସ୍ତ ଲୁହଲହୁ ଢାଳି, ଅହରହ ବ୍ୟସ୍ତ ରହିଲେ । ପରିଶ୍ରମର ସୀମା ନାହିଁ, ଭାବନାର ସୀମା ନାହିଁ, ଆଖିରେ ନିଦ ନାହିଁ, ପେଟରେ ଭୋକ ନାହିଁ । ଖାଲି ଗୃହପାଖରେ ତାଙ୍କର ଥିଲେ ଓଡ଼ିଆ ପ୍ରାଣର ମଧୁସୂଦନ । ମଧୁସୂଦନଙ୍କ ମୁଖର ଏକ ନିଛକ ରୂପାୟନ କରିବା ପାଇଁ ସେ ଧ୍ୟାନମଗ୍ନ ରହୁଥାଆନ୍ତି । ନିଜ ରୁଚି ଓ ନିଜ ମନଃପୂତ ହେଲା ଭଳି ପ୍ରତିମୂର୍ତ୍ତିଟିଏ ଗଢ଼ି ସାରିଲା ପରେ ସେ ଟିକେ ସ୍ଥିର ହୋଇ ଥିଲେ ।

ଯେଉଁଦିନ ପ୍ରତିମୂର୍ତ୍ତି ଶୈଳବାଳା ମହାବିଦ୍ୟାଳୟର କାର୍ଯ୍ୟାଳୟ ଆଗରେ ଉନ୍ମୋଚନ ହେଲା ସେଦିନ ଯେଉଁ ଶାନ୍ତି ବିପ୍ରଚରଣ ଅନୁଭବ କରିଥିଲେ, ତାହା ବର୍ଣ୍ଣନାତୀତ । ଶଙ୍ଖମଲମଲ ପଥରରେ ମଧୁସୂଦନଙ୍କ ପ୍ରତିମୂର୍ତ୍ତି ଉନ୍ମୋଚନ କରି ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହରୁ ବିସ୍ମିତ ହେବା ସଙ୍ଗେ ସଙ୍ଗେ ଓଡ଼ିଶାର ଉତ୍କୃଷ୍ଟ କଳାରେ ବିମୋହିତ ହୋଇ ପଡ଼ିଥିଲେ ।

ବିପ୍ରଚରଣଙ୍କ କୃତି ଦେଖି ନାନା ମହଲରେ ପ୍ରଶଂସା ପ୍ରକାଶ ପାଇଲା । ପରେ ସେ ହାତକୁ ନେଲେ ରାଧାନାଥ ରାୟଙ୍କର ପ୍ରତିମୂର୍ତ୍ତି ଗଠନର ଦାୟିତ୍ୱ । ଉତ୍କଳ ସାହିତ୍ୟ ସମାଜ ଆଗରେ ରାଧାନାଥ ରାୟଙ୍କର

ଯେଉଁ ମାର୍ବଲ ପ୍ରତିମୂର୍ତ୍ତି ଅଦ୍ୟାବଧି ବିଦ୍ୟମାନ ତାହା ଶିଳ୍ପୀ ବିପ୍ରଚରଣଙ୍କ ବିଶିଷ୍ଟ କୃତି ହିସାବରେ ଉଚ୍ଚ ପ୍ରଶଂସିତ ।

ରଙ୍ଗ ମହଲରେ ତାଙ୍କ ଷ୍ଟୁଡ଼ିଓ । ତାରି ଭିତରେ ନିଜ ଭାଗ୍ୟ ଓ ଭବିଷ୍ୟତ ନେଇ ରହିଥାଆନ୍ତି ନୀରବ ସାଧକ ଶିଳ୍ପୀ ବିପ୍ରଚରଣ ।

ସେହି ସମୟରେ ଡଃ ହରେକୃଷ୍ଣ ମହତାବ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଶିଳ୍ପମନ୍ତ୍ରୀ ହୋଇ ଥାଆନ୍ତି । ତାଙ୍କର ସାହାଯ୍ୟ ପାଇଁ ଶିଳ୍ପୀ ତାଙ୍କ ନିକଟରେ ଅନେକାଂଶରେ ଋଣୀ । ଡଃ ମହତାବ ପ୍ରତ୍ୟେକ ସରକାରୀ ବିଭାଗକୁ ନିର୍ଦ୍ଦେଶ ଦେଇଥିଲେ ଯେ ସରକାରୀ ବିଜ୍ଞାପକ ଚିତ୍ରମାନ ସବୁ ବିପ୍ରଚରଣଙ୍କ ଷ୍ଟୁଡ଼ିଓରୁ କରାହେବ । ଏହା ଫଳରେ ତାଙ୍କର ଅର୍ଥନୈତିକ ଦୁର୍ଗତି କେତେକାଂଶରେ ଦୂର ହେଲା ଓ ଶିଳ୍ପ ସାଧନାରେ ରତ ରହିବାପାଇଁ ସୁଯୋଗ ସୃଷ୍ଟି କଲା ।

ରଙ୍ଗଭବନରେ ରହି ନାନା କର୍ମବ୍ୟସ୍ତ ଥିଲେ ମଧ୍ୟ ସେ ଭାବୀ ବଂଶଧରମାନଙ୍କ ପାଇଁ ନିଜର କର୍ତ୍ତବ୍ୟ ଭୁଲି ଯାଇ ନଥିଲେ । ଓଡ଼ିଆ ଯୁବକମାନଙ୍କ ମନରେ କିପରି ଶିଳ୍ପ ପ୍ରତି ତଥା କଳାପ୍ରତି ଆଗ୍ରହ ସୃଷ୍ଟି କରିବା ଓ ସେମାନଙ୍କୁ ଅନୁରୂପ ସୁବିଧା ସୁଯୋଗ ଦେବା ତାଙ୍କର ଗୋଟିଏ ପ୍ରଧାନ କର୍ତ୍ତବ୍ୟ ବୋଲି ନିଜେ ବିଚାର କଲେ ।

ସେହି ସମୟରେ ଶ୍ରୀଯୁକ୍ତ ମୁରଲୀଧର ଟାଲି ଓ ବିଭୂତି କାନୁନ୍‌ଗୋ ନିଜ ଚେଷ୍ଟା ଓ ନିଜ ଖର୍ଚ୍ଚରେ ଗୋଟିଏ ଆର୍ଟ ବିଦ୍ୟାଳୟ ଆରମ୍ଭ କରିଥିଲେ । ଆର୍ଟ ବିଦ୍ୟାଳୟ ପାଇଁ ବହୁ ଅର୍ଥର ଆବଶ୍ୟକତା ଥିବାରୁ ସେମାନଙ୍କ ବିଦ୍ୟାଳୟ ଏତେ ସୁନ୍ଦର ହୋଇ ପାରି ନଥିଲା । ସେମାନଙ୍କ ପକ୍ଷରେ ଏତେ ଅର୍ଥ ବ୍ୟୟ କରିବା ସମ୍ଭବପର ନଥିଲା । ଏହି ବିଦ୍ୟାଳୟକୁ ଆଖିଆଗରେ ରଖି କିପରି ସରକାରୀ ଉଦ୍ୟମରେ ଏକ ସ୍କୁଲ ନିର୍ମାଣ କରାଯାଇ ପାରିବ ସେହି ଚିନ୍ତାରେ ଥାଆନ୍ତି ବିପ୍ରଚରଣ ।

ସୁବିଧା ଓ ସୁଯୋଗ ଜୀବନରେ ସବୁବେଳେ ଆସେ ନାହିଁ । ଧୈର୍ଯ୍ୟର ସହ ଏହାକୁ ଅପେକ୍ଷା କରିବାକୁ ପଡ଼େ । "ଇଚ୍ଛାଥିଲେ ଉପାୟ ଆପେ ଆପେ ଆସେ" । ମନକଥା ମନରେ ରଖି ଅହରହ ଚେଷ୍ଟାରତ ଥାଆନ୍ତି ସେ ।

ଓ଼କ୍ଟର ହରେକୃଷ୍ଣ ମହତାବ ଯେତେବେଳେ ବମ୍ବେ ଗଭର୍ଣ୍ଣର ପଦରୁ ବିଦାୟ ନେଇ ଓଡ଼ିଶାକୁ ଫେରିଥାଆନ୍ତି । ତାଙ୍କୁ ଯାଇ ସାକ୍ଷାତ କଲେ ବିପ୍ରଚରଣ । ନାନା ଆଲୋଚନା ମଧ୍ୟରେ ସରକାରୀ ଉଦ୍ୟମରେ ଓଡ଼ିଶାରେ ଏକ ଆର୍ଟ ବିଦ୍ୟାଳୟ ସ୍ଥାପନ କରିବାକୁ ତାଙ୍କୁ ଅନୁରୋଧ କଲେ ବିପ୍ରଚରଣ । ତାଙ୍କର ପ୍ରସ୍ତାବ ଯୁକ୍ତିଯୁକ୍ତ ବୋଲି ଡକ୍ଟର ମହତାବ ଅନୁଭବ କଲେ । ସେତେବେଳେ ସତ୍ୟାନନ୍ଦ ଚମ୍ପତିରାୟ (ଏମ୍.ଏଲ୍.ଏ.) ବିଧାନସଭାର ସଭ୍ୟ ଥାଆନ୍ତି । ତାଙ୍କୁ ଡକାଇ ଡଃ ମହତାବଜୀ ଏ ବିଷୟରେ ଅନେକ ଆଲୋଚନା କଲେ । ବିଦ୍ୟାଳୟ ନିର୍ମାଣ ପାଇଁ ସେ ଏକ ଛାଞ୍ଚ ପ୍ରସ୍ତୁତ କଲେ । ତାହା ଚମ୍ପତିରାୟ ସ୍କିମ୍ ନାମରେ ପରିଚିତ । ପରେ ତାକୁ ସେ ଓଡ଼ିଶା ବିଧାନସଭାରେ ଉତ୍ଥାପନ କଲେ । ସମସ୍ତ ସଭ୍ୟଙ୍କ ଦ୍ୱାରା ଏହି ପ୍ରସ୍ତାବ ଗ୍ରହଣୀୟ ବୋଲି ବିବେଚିତ ହେଲା । ସେତେବେଳେ ଶିକ୍ଷାମନ୍ତ୍ରୀ ଥାଆନ୍ତି ଶ୍ରୀଯୁକ୍ତ ଲିଙ୍ଗରାଜ ମିଶ୍ର । ଆର୍ଟ ସ୍କୁଲ ନିର୍ମାଣର ଦାୟିତ୍ୱ ତେଣୁ ତାଙ୍କର ଉପରେ ହିଁ ନ୍ୟସ୍ତ ହେଲା ।

୧୯୫୭ ମସିହାରେ ଖଲିକୋଟ ମହାରାଜାଙ୍କ ରାଜପ୍ରାସାଦଟି ଓଡ଼ିଶାସରକାରଙ୍କ ଦ୍ୱାରା କିଣା ଯାଇଥିଲା । ସେହି ଗୃହଟି ଆର୍ଟ ବିଦ୍ୟାଳୟ ପାଇଁ ଉପଯୁକ୍ତ ବୋଲି ବିବେଚନା କରି ସେହିଠାରେ ସ୍କୁଲ ନିର୍ମାଣ ହେବାର ସ୍ଥିର ହେଲା । ବିଦ୍ୟାଳୟର ନାମ ବିରକିଶୋର ଆର୍ଟ ବିଦ୍ୟା-ଳୟ ରଖାଗଲା । ୧୯୫୭ ମସିହାରେ ବିପ୍ରଚରଣ ଓ ଗୋପାଳ କାନୁନ୍‌ଗୋ ଦୁଇଜଣ ଶିକ୍ଷକ ରୂପେ ନିଯୁକ୍ତି ପାଇଲେ । ଖଲିକୋଟ ମହାରାଜାଙ୍କ ସାନ ଭାଇ ଶରତଚନ୍ଦ୍ର ଦେଓ ଆର୍ଟ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ହେଲେ । ବିଦ୍ୟାଳୟ ଆରମ୍ଭ ହେଲା । ସେହି ଦିନରୁ ବିପ୍ରଚରଣଙ୍କର ଆରମ୍ଭ ହେଲା ଶିକ୍ଷକ ଜୀବନ ।

୧୯୫୭ରୁ ୧୯୮୦ ମସିହା ପର୍ଯ୍ୟନ୍ତ ଶିକ୍ଷକ ରୂପେ ସେ କାର୍ଯ୍ୟ କଲେ । ଶିକ୍ଷକ ଥିବା ସମୟରେ ବିଦ୍ୟାଳୟର ନାନା ଉନ୍ନତି କଲେ, ନାନା କାମ କଲେ । ଉତ୍ତମ ଶିକ୍ଷକ ରୂପେ ଓ ଉତ୍ତମ ଶିଳ୍ପୀ ରୂପେ ସେ ୧୯୬୧ ମସିହାରେ ଓଡ଼ିଶା ଲଳିତକଳା ଏକାଡ଼େମୀ ପକ୍ଷରୁ ଓ ୧୯୬୪ ମସିହାରେ ଉତ୍କଳ ଗୁରୁକଳା ପରିଷଦ ପକ୍ଷରୁ ସ୍ୱର୍ଣ୍ଣପଦକ ଲାଭ କରିଥିଲେ । ଏହାଛଡ଼ା ପୁନର୍ବାର ଲଳିତକଳା ଏକାଡ଼େମୀ ଦ୍ୱାରା ୧୯୮୩ ମସିହାରେ ରାଜ୍ୟପୁରସ୍କାର

ସମ୍ମାନ ପାଇଥିଲେ ଓ ୧୯୮୮ ମସିହାରେ ଓ୍ୱାକର୍ସ ଆର୍ଟିଷ୍ଟ ଆସୋସିଏସନ ପକ୍ଷରୁ ସମ୍ମାନିତ ହୋଇଥିଲେ ।

ଆର୍ଟ ବିଦ୍ୟାଳୟ ୧୯୮୧ ମସିହାରେ ଆର୍ଟ ମହାବିଦ୍ୟାଳୟରେ ପରିଣତ ହେଲା । ପ୍ରଥମେ ବିପ୍ରଚରଣ ୧୯୮୧ ମସିହାରେ ପ୍ରିନ୍ସପାଲ ରୂପେ ଅସ୍ଥାୟୀ ଭାର ଗ୍ରହଣ କରିଥିଲେ । ପରେ ୧୯୮୨ରୁ ସ୍ଥାୟୀ ପ୍ରିନ୍ସପାଲ ହୋଇ ୧୯୮୫ ମସିହା ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ଶେଷରେ ୧୯।୫ ମସିହାରେ କର୍ମରୁ ଅବସର ଗ୍ରହଣ କଲେ ।

ଶିକ୍ଷକ ଜୀବନ ମଧ୍ୟରେ ସେ ଅନେକ କୃତୀ କଳାକାରମାନଙ୍କୁ ସୃଷ୍ଟି କରିଛନ୍ତି । ସେମାନଙ୍କ ମଧ୍ୟରୁ ଶରତଚନ୍ଦ୍ର, ମହାନ୍ତି ବର୍ତ୍ତମାନ ହେଣ୍ଡିମାଷ୍ଟରର ପ୍ରଧାନ ଡିଜାଇନର । ଶ୍ରୀ ଦାମୋଦର ବେହେରା, ଶ୍ରୀ ଶିବ ପାଣିଗ୍ରାହୀ, ଶ୍ରୀ ବଳଦେବ ମହାରଥୀ । ଶ୍ରୀ ଦିନନାଥ ପାଠୀ ଆଦି କଳାକାରମାନେ ଓଡ଼ିଶାର ବିଭିନ୍ନ ଉଚ୍ଚପଦବୀରେ ଅଧିଷ୍ଠିତ । ଏହାଛଡ଼ା ତାଙ୍କର କୃତୀ ଛାତ୍ର ଶ୍ରୀ ଜଗଦୀଶଚନ୍ଦ୍ର, କାନୁନ୍‌ଗୋ ଲଳିତ କଳା ଏକାଡେମିର ସେକ୍ରେଟେରୀ ରୂପେ କାର୍ଯ୍ୟଭାର ଗ୍ରହଣ କରି ଉପଯୁକ୍ତ ଗୁରୁଙ୍କର ଉପଯୁକ୍ତ ଛାତ୍ର ଭାବରେ ଓଡ଼ିଶାରେ କଳାର ସମୃଦ୍ଧି କରିବାରେ ଅହରହ ଲାଗିପଡ଼ିଛନ୍ତି ।

ପୁରାତନ ଯୁଗରୁ ଓଡ଼ିଆ ତାର କଳା ନୈପୁଣ୍ୟ ପାଇଁ ଉତ୍କର୍ଷ ଲାଭ କରିଥିଲା । ଏଣୁ ଓଡ଼ିଶାର ଅନ୍ୟନାମ ଥିଲା ଉତ୍କଳ । ଚିତ୍ରକଳା, ମାଟିମୂର୍ତ୍ତି, ପଥର ଖୋଦେଇ ମୂର୍ତ୍ତି, ଲୁହା ଖୋଦେଇ ମୂର୍ତ୍ତି, କାଠଖୋଦେଇ ମୂର୍ତ୍ତି, ସିମେଣ୍ଟ ମୂର୍ତ୍ତି, ପ୍ଲାଷ୍ଟର ପେଣ୍ଟ ମୂର୍ତ୍ତି ଓ ବ୍ରୋଞ୍ଜ ମୂର୍ତ୍ତି ଇତ୍ୟାଦି ନାନା ଶୈଳୀରେ ପ୍ରତିମୂର୍ତ୍ତିମାନ ନିର୍ମାଣ କରାଯାଉଥିଲା । ବିପ୍ରଚରଣ କେବଳ ମାଟିରେ ମୂର୍ତ୍ତି ତିଆରି କରି ସନ୍ତୁଷ୍ଟ ରହିପାରି ନ ଥିଲେ । ସେ ଶଙ୍ଖ ମଲମଲ ପଥର, ମୁଗୁନି ପଥର, ବ୍ରୋଞ୍ଜ ଇତ୍ୟାଦିରେ ମୂର୍ତ୍ତିମାନ ଗଠନ କଲେ । ବ୍ରୋଞ୍ଜରେ ମୂର୍ତ୍ତି ଗଠନ ଶୈଳୀ ଶିକ୍ଷା କରିବା ପାଇଁ ତାଙ୍କୁ ମାନ୍ଦ୍ରାଜ ଯିବାକୁ ପଡ଼ିଥିଲା । ସେଠାରେ ସେ ଗୁରୁଦେବ ବାବୁଙ୍କ ଠାରୁ ଏହାର କୌଶଳ ଶିକ୍ଷା କରିଥିଲେ । ଏହାଛଡ଼ା ସେ ପ୍ଲାଷ୍ଟର, କାଉଣ୍ଟ, ଓ ସିମେଣ୍ଟ ଇତ୍ୟାଦିରେ ମଧ୍ୟ ମୂର୍ତ୍ତି ଗଠନ କରିବାରେ ସିଦ୍ଧହସ୍ତ ଥିଲେ ।

ଜୀବନ କାଳ ମଧ୍ୟରେ ଓଡ଼ିଶାର ନାନା ସ୍ଥାନରେ ତାଙ୍କ ହାତଗଢ଼ା ପ୍ରତିମୂର୍ତ୍ତିମାନ ଏବେ ମଧ୍ୟ ରହି ଉଚ୍ଚ ପ୍ରଶଂସା ଲାଭ କରି ଓଡ଼ିଆମାନଙ୍କ ଆଗରେ ଏକ ଜ୍ୱଳନ୍ତ ଆଦର୍ଶ ରୂପେ ଦଣ୍ଡାୟମାନ । ସେଗୁଡ଼ିକ ମଧ୍ୟରୁ—

**କଟକ :**

୧ । ଶୈଳବାଳା ମହିଳା ମହାବିଦ୍ୟାଳୟରେ ମଧୁସୂଦନଙ୍କ ପ୍ରତିମୂର୍ତ୍ତି ।

୨ । ଉତ୍କଳ ସାହିତ୍ୟ ସମାଜ ପ୍ରାଙ୍ଗଣରେ—ରାଧାନାଥ ରାୟଙ୍କ ପ୍ରତିମୂର୍ତ୍ତି ।

୩ । ଓଡ଼ିଶା ହାଇକୋର୍ଟରେ—ମଧୁସୂଦନଙ୍କ ପ୍ରତିମୂର୍ତ୍ତି ।

୪ । ରେଭେନ୍‌ସା ମହାବିଦ୍ୟାଳୟରେ—ସୁଭାଷ ବୋଷଙ୍କ ପ୍ରତିମୂର୍ତ୍ତି

**ଭୁବନେଶ୍ୱର :**

୧ । ଆଠ ନମ୍ବର ଛକରେ—ଗୋପବନ୍ଧୁଙ୍କ ପ୍ରତିମୂର୍ତ୍ତି ।

୨ । ମାଷ୍ଟରକ୍ୟାଣ୍ଟିନ୍ ଛକରେ—ଜବାହାରଲାଲ ନେହେରୁଙ୍କ ପ୍ରତିମୂର୍ତ୍ତି ।

୩ । ବି. ଜେ. ବି ମହାବିଦ୍ୟାଳୟରେ—ବକ୍‌ସି ଜଗବନ୍ଧୁଙ୍କ ପ୍ରତିମୂର୍ତ୍ତି ।

**ରାଉରକେଲା :**

୧ । ସୁପର ବଜାରରେ—ଗୋପବନ୍ଧୁ ପ୍ରତିମୂର୍ତ୍ତି ।

୨ । ଷ୍ଟେସନ ବଜାରରେ—ମଧୁସୂଦନଙ୍କ ପ୍ରତିମୂର୍ତ୍ତି ।

୩ । ଲୁହାକାରଖାନା ଆଗରେ—ବିରସା ମୁଣ୍ଡାଙ୍କ ପ୍ରତିମୂର୍ତ୍ତି । ସମ୍ବଲପୁର ଜେଲ ଛକରେ ଓ ମେଡ଼ିକାଲ ଆଗରେ ସୁରେନ୍ଦ୍ର ସାଏଙ୍କ ପ୍ରତିମୂର୍ତ୍ତି ଇତ୍ୟାଦି ପ୍ରଧାନ । ଏହାଛଡ଼ା ଓଡ଼ିଶାର ନାନା ସ୍ଥାନରେ ଅନେକ ପ୍ରତିମୂର୍ତ୍ତି ଗଠନ କରିଛନ୍ତି କୁଶଳୀ ଶିଳ୍ପୀ ବିପ୍ରଚରଣ ।

ଶିକ୍ଷା ଅସରନ୍ତି । ଜୀବନବ୍ୟାପୀ ଶିକ୍ଷା କଲେ ମଧ୍ୟ ଶିକ୍ଷାର ପରିସମାପ୍ତି ଘଟେନାହିଁ । ଶିଳ୍ପୀ ବିପ୍ରଚରଣ ତାଙ୍କ କଳାନୈପୁଣ୍ୟ ପାଇଁ ସେ ଜଣଙ୍କ ନିକଟରେ ଋଣୀ ନ ଥିଲେ । ସେ ବହୁଲୋକଙ୍କ ଦ୍ୱାରା ପ୍ରଭାବିତ ହୋଇଛନ୍ତି । ସେମାନଙ୍କ ମଧ୍ୟରୁ ମାନ୍ଦ୍ରାସ ଆର୍ଟ ମହାବିଦ୍ୟାଳୟର

ଅଧକ୍ଷ କଲିକତାର ଦେବୀପ୍ରସାଦ ରାୟଚୌଧୁରୀ ଥିଲେ ପ୍ରଧାନ । ପୂର୍ବରୁ ମନ୍ଦିର ଗାତ୍ରଗୁଡ଼ିକରେ ଯେଉଁ ମୂର୍ତ୍ତିଗୁଡ଼ିକ ଗଠନ କରାଯାଇଛି ତାକୁ ଆଳଙ୍କାରିକ ବା ଓରିଏଣ୍ଟାଲ୍ ମୂର୍ତ୍ତି (Oriental Statue) କୁହାଯାଏ । ସେଥିର ପରିପାଟି ଓ ଆଳଂକାରିକ ଭାବ ବିଶେଷ ଭାବେ ପରିଲକ୍ଷିତ ହୁଏ । ଇଂରେଜ ସରକାରଂକ ସମୟରେ ସାଧାରଣତଃ ସେମାନଂକ ପ୍ରତିମୂର୍ତ୍ତି ଭାରତରେ ରଖାଯାଉଥିଲା ଓ ସେଗୁଡ଼ିକ ବିଲାତରୁ ଅଣାଯାଉଥିଲା । କିନ୍ତୁ ପରେ ପ୍ରକୃତରେ ଏହି ରାୟଚୌଧୁରୀ ପ୍ରାକୃତିକ ମୂର୍ତ୍ତି (Realistic Statue) ଗଠନ କରିବାକୁ ଚେଷ୍ଟା କରିଥିଲେ । ତାଙ୍କୁ ଶିଳ୍ପୀ ବିପ୍ରଚରଣ ଆଦର୍ଶ ରୂପେ ରଖି ପ୍ରତିମୂର୍ତ୍ତିରେ ପ୍ରକୃତ ରୂପ ଦେବାକୁ ଯତ୍ନଶୀଳ ହୋଇଥିଲେ । ଏହାଛଡ଼ା କଲିକତା ଆର୍ଟ ବିଦ୍ୟାଳୟର ଶ୍ରୀଯୁକ୍ତ ପ୍ରଦୋଷ ଦାସଗୁପ୍ତା ତାଂକର ଏକ ଆଦର୍ଶ ଶିକ୍ଷକ ଥିଲେ ।

ଚିତ୍ରକଳାରେ ଓଡ଼ିଶାର ଶ୍ରୀ ମୁରଲୀଧର ଟାଲି ଓ ଭାରତରେ ମୂର୍ତ୍ତିଗଠନରେ ଶ୍ରୀ ଦେବୀପ୍ରସାଦ ଚୌଧୁରୀଙ୍କୁ ସେ ସମ୍ମାନିତ କରନ୍ତି । ପୃଥିବୀର ଶିଳ୍ପୀମାନଙ୍କ ମଧ୍ୟରେ ସେ ମାଇକେଲ ଲେଞ୍ଜିର ରୋଡ଼ିନ୍‌ଙ୍କୁ ନିଜର ଆଦର୍ଶ ରୂପେ ସମ୍ମାନିତ କରନ୍ତି । କାରଣ ତାଙ୍କ ନିର୍ମିତ ମୂର୍ତ୍ତି ଗଠନ ଅତି ପ୍ରାଞ୍ଜଳ, ପରିଷ୍କାର ଓ ପ୍ରାକୃତିକ । ସେହିମାନଂକ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ତାଙ୍କ ନିର୍ମିତ ପ୍ରତିମୂର୍ତ୍ତିରେ ମୁଖରେ ପ୍ରକୃତ ଭଙ୍ଗୀ ଓ ଲାଳିତ୍ୟ ଫୁଟାଇବା ପାଇଁ ଉଦ୍ୟମ କରି ଆସିଛନ୍ତି ।

ଏକ ସଫଳ କଳାକାର ରୂପେ ପ୍ରତିଷ୍ଠା ଲାଭକରି ସେ ବର୍ତ୍ତମାନ ପରିବାର ସହ ଶାନ୍ତିରେ ଭୁବନେଶ୍ୱରରେ ରହୁଅଛନ୍ତି । ତାଂକର ୫ ପୁଅ ଓ ଏକମାତ୍ର ଝିଅ । ପ୍ରଥମ ପୁତ୍ର ଓଡ଼ିଶା ଏ. ଜି. କାର୍ଯ୍ୟାଳୟରେ, ଦ୍ୱିତୀୟ ପୁତ୍ର ନୌବାହିନୀରେ ଓ ତୃତୀୟ ପୁତ୍ର ଓଭରସିୟର ରୂପେ କାର୍ଯ୍ୟରତ । ଅନ୍ୟ ଦୁଇପୁଅ ଏବେ ମଧ୍ୟ ଛାତ୍ର ।

ଆର୍ଟ ମହାବିଦ୍ୟାଳୟରୁ ଅବସର ନେଲେ ମଧ୍ୟ ଶିଳ୍ପ ଜଗତରୁ ସେ ଅବସର ନେଇ ନାହାନ୍ତି । ଜାତିର ପିତା ମହାତ୍ମାଗାନ୍ଧିଙ୍କ ଏକ ବିରାଟ ପ୍ରତିମୂର୍ତ୍ତି ପୁରୀର ସମୁଦ୍ର କୂଳରେ ପ୍ରତିଷ୍ଠା କରିବା ପାଇଁ ଏବେ ମଧ୍ୟ ସେ କର୍ମରତ ।

ଆର୍ଟ ଶିକ୍ଷା ପଦ୍ଧତିକୁ ସୁନିୟନ୍ତ୍ରଣ କରିବା ପାଇଁ ସେ ସମସ୍ତଙ୍କୁ କହି ଆସିଛନ୍ତି । ତାଙ୍କ ମତରେ ଗୋଟିଏ କଳାକାରର ହୃଦୟ ଅତ୍ୟନ୍ତ

କୋମଳ ଓ ଆବେଗମୟ । ତାହା କ୍ଷତବିକ୍ଷତ ହେଲେ ତା'ର କଳା-ନୈପୁଣ୍ୟ ନଷ୍ଟ ହୁଏ । ତେଣୁ କଳାକାରମାନଙ୍କୁ ଶାନ୍ତିରେ ରହିବା ପାଇଁ ସୁବିଧା ସୁଯୋଗ ଦେବା ଏକ ଜାତୀୟ କର୍ତ୍ତବ୍ୟ ।

ସାରା ଜୀବନର ଅଭିଜ୍ଞତାରୁ ସେ କଳାକାରମାନଙ୍କ ଉଦ୍ଦେଶ୍ୟରେ କହନ୍ତି—"ସ୍ୱକୀୟ ପ୍ରତି ମମତା ନ ରଖି କଳାପ୍ରତି ମମତା ରଖି ଧୈର୍ଯ୍ୟ-ହରା ନ ହୋଇ କାର୍ଯ୍ୟ କଲେ ଭବିଷ୍ୟତ ନିଶ୍ଚୟ ଉଜ୍ଜଳମୟ ହେବ ।"

ନିଜର ଜନ୍ମଗତ କଳାପ୍ରେମର ଶ୍ରମସାଧନା ତାଙ୍କ ଜୀବନକୁ ଏବେବି କର୍ମମୁଖର କରିପାରିଛି ।

ପୂର୍ବକାଳରୁ ପ୍ରଚଳିତ ଶିଳ୍ପକଳାକୁ ପାଞ୍ଚଭାଗରେ ବିଭକ୍ତ କରା-ଯାଇଛି । ଯଥା—

୧ । ତୈଳଚିତ୍ର (Oil painting)—Western type (Realistic).

୨ । ଭାରତୀୟ ଚିତ୍ରକଳା—Oriental style of painting.

୩ । ଖୋଦେଇ ମୂର୍ତ୍ତି—Sculpture.

୪ । ବୈଷୟିକ ଶିଳ୍ପ—Commercial Art (Applied Art).

୫ । Graphic Art.

ଉପରୋକ୍ତ ପ୍ରକାର ଭେଦରେ ଶିଳ୍ପୀ ବିପ୍ରଚରଣଙ୍କ ଆଗ୍ରହ ଖୋଦେଇ ମୂର୍ତ୍ତି ଗଠନରେ (Sculpture) ଥିଲା ସର୍ବାଧିକ । ଓଡ଼ିଶାର ନାନା ସ୍ଥାନରେ ସ୍ଥାପିତ ହୋଇଥିବା ପ୍ରତିମୂର୍ତ୍ତି ଗଠନରେ ସେ ଯେଉଁ ପ୍ରତିଭା ପ୍ରକଟ କରିଛନ୍ତି ତାହା ଅବିସ୍ମରଣୀୟ । ପ୍ରତ୍ୟହ ଶହ ଶହ ଲୋକଙ୍କ ଆଖିରେ ସେ ପ୍ରତିମୂର୍ତ୍ତିଗୁଡ଼ିକ ପଡ଼ିଲେ ମଧ୍ୟ ପ୍ରତିମୂର୍ତ୍ତିର ଶିଳ୍ପୀ, ସାଧାରଣ ଲୋକଙ୍କ ପାଇଁ ଅଜଣା । ସେଥିପାଇଁ ଆମେ ପ୍ରତ୍ୟେକ ଓଡ଼ିଆ ଦାୟୀ । କାରଣ ଆମେ ଏପର୍ଯ୍ୟନ୍ତ ପ୍ରତିଭାକୁ ସମ୍ମାନ ଦେଇ ଜାଣିନାହୁଁ କିମ୍ବା ସେଥିପାଇଁ ଆମର ମାନସିକ ପ୍ରସ୍ତୁତି ମଧ୍ୟ ନାହିଁ । ପୂଜ୍ୟ ପୂଜାର ବ୍ୟତିକ୍ରମରେ ଜାତିର ଉତ୍ଥାନ ହୁଏ ନାହିଁ ବରଂ ହୁଏ ପତନ । ପ୍ରତିଭାବାନ ଶିଳ୍ପୀ ବିପ୍ରଚରଣଙ୍କ ହାତକୁ ଈଶ୍ୱର ଅମୃତମୟ କରନ୍ତୁ ଓ ତାଙ୍କର ପାଇଁ ଓଡ଼ିଶାର ହୃତ ଗୌରବ ଫେରିଆସୁ, ଏହା ଆମ ପ୍ରତ୍ୟେକ ଓଡ଼ିଶାବାସୀଙ୍କର କାମନା ।



# ଅଭିନେତା ଶ୍ରୀ ପ୍ରିୟନାଥ ମିଶ୍ର

ଶ୍ରୀ ଶୁଭନାରାୟଣ ସ୍ୱାଇଁ

**ସେ**ଦିନ ସଞ୍ଜ ନଇଁ ଆସୁଥାଏ । ମୁଁ ପୀରବାବୁଙ୍କ ଗ୍ରିନ୍‌ ରୁମ୍‌ରେ ଯାଇ ବସିପଡ଼ିଲି । ପ୍ରାୟ ଦୁଇମିନିଟ ମଧ୍ୟରେ, ମୋ ଆସିବା ଖବର ପାଇ ପୀରବାବୁ ହସି ହସି ଆସି ପ୍ରଶ୍ନକଲେ—

—କୁଆଡ଼େ ଆସିଲେ ?···ବହୁଦିନ ପରେ ଦେଖା···

ତାଙ୍କ ହସ ହସ ପ୍ରଶ୍ନରେ ନିଜର ହସ ମିଳାଇ ମୁଁ ଜଣାଇ ଥିଲି—

ଆପଣଙ୍କ ବାୟୋଡ଼ାଟା ନେବାକୁ ଆସିଲି ।

ତା'ପରେ ଏକ ଦରଦଭରା କଣ୍ଠରେ ସେ ଶୁଣାଇଥିଲେ— "ବୁଝିଲେ ଆଜ୍ଞା, ଓଡ଼ିଶା ଆମର କଳାକ୍ଷେତ୍ର । ବହୁ କଳାର ସୃଷ୍ଟି ଏଠାରେ ହୋଇଛି । ଏଠାରେ କଳାର ଆଦର ଅଛି ସତ, ହେଲେ କଳାକାରର ଆଦର ନାହିଁ ।

ଅନ୍ୟ କଳାକାରମାନଙ୍କ କଥା ଛାଡ଼ିନ୍ତୁ । ଆଗେ ଆମ ଅଭିନେତା ଆଉ ଅଭିନେତ୍ରୀମାନଙ୍କ କଥା ଆଲୋଚନାକୁ ଆଣନ୍ତୁ । କି ଦୁଃଖଦ ଏଇ ଅଭିନେତାର ଜୀବନ । ଯେତେବେଳେ ଜଣେ ଅଭିନେତାର ରୂପଯୌବନ ଥିଲା, ସେତେବେଳେ ରଙ୍ଗମଞ୍ଚରେ ତା' ଅଭିନୟ ଦେଖି ଦର୍ଶକମାନେ ଆନନ୍ଦରେ ଆତ୍ମହରା ହୋଇ ପଡ଼ୁଥିଲେ । ଦୁଇ ତିନିଘଣ୍ଟା ପାଇଁ ସେ ସେହି ଦର୍ଶକମାନଙ୍କ ଦୁଃଖ କଷ୍ଟକୁ ଭୁଲାଇ ଦେଇ ପାରୁଥିଲା । ସେଥିପାଇଁ

ଘନଘନ କରତାଳି ଧ୍ୱନିରେ ରଙ୍ଗମଞ୍ଚ କମ୍ପି ଉଠୁଥିଲା । ଆଜି ସେହି କଳାକାର ତା’ ଜୀବନର ଚତୁର୍ଥ ଅବସ୍ଥାରେ ।, ଖାସ୍ ଅଭିନୟକୁ ଜୀବନର ଏକମାତ୍ର ସମ୍ବଳ କରି ଯେଉଁମାନେ ବଞ୍ଚି ଆସିଛନ୍ତି, ଶେଷ ଜୀବନରେ ତାଙ୍କୁ କେହି ଆଉଆଖିରେ ପଗ୍ଭରୁଛି କି ? ..

କଳାକାର ସମସ୍ତଙ୍କୁ ହସାଇ ପାରେ କିନ୍ତୁ ନିଜେ ହସି ପାରେନା । କିଛି ସମୟ ପାଇଁ ସମସ୍ତଙ୍କ ଦୁଃଖକୁ ଭୁଲାଇ ଦେଇପାରେ କିନ୍ତୁ କାହାର ମନରେ ଦୁଃଖ ନଦଏନା । ହେଲେ ଜଣେ କୁଶଳୀ କଳାକାର ଜୀବନର ଯେଉଁ ନିଷ୍ଠା, ଯେଉଁ ସାଧନା ଆଉ ଯେଉଁ ତ୍ୟାଗ ରହିଛି—ତା’ର ଯଥାର୍ଥ ମୂଲ୍ୟାୟନ ହୋଇ ପାରୁଛି କି ? ସରକାରଙ୍କ ତରଫରୁ ଯେଉଁ ଅନୁଦାନ ମିଳୁଛି, ତାହା ଖାଲି ଢୋକେ ପିଇ, ଦଣ୍ଡେ ଜୀଇଁବା କଥା ।

ଜଣେ ଅଭିନେତାର ଜୀବନ ଏକ ଭିନ୍ନ ଉପାଦାନରେ ଗଢ଼ା । ସେ ଧନ, ମାନ କି ଗୌରବ ଲାଭ ଆଶାରେ ସାଧନା କରି ନଥାଏ । ଅଭିନୟ କଳାହିଁ ତା’ ଜୀବନର ସବୁକିଛି । ସେଇଥିରେ ତା’ର ସୁଖ, ଶାନ୍ତି, ଆନନ୍ଦ । ସେଇ ତା’ର ଜୀବନ ।

ସେଇ କଳାପାଗଳ ମଣିଷଟିଏ ଯେ ଅନେକ ଦର୍ଶକଙ୍କ ମନରେ ବଞ୍ଚିରହିଛି । ସେଇ ତା’ ପାଇଁ ଯଥେଷ୍ଟ । ହେଲେ ସମାଜରେ ଅନ୍ୟମାନଙ୍କ ତୁଳନାରେ ସେ କ’ଣ ପ୍ରକୃତରେ ବଡ଼ ବୋଲି କିଏ ଭାବେ ?

ମୋର ସହପାଠୀମାନେ ବିଭିନ୍ନ କ୍ଷେତ୍ରରେ ଉଚ୍ଚଶିକ୍ଷା ଲାଭକରି ବଡ଼ ବଡ଼ ଚାକିରି କରି ଆଜି ସମାଜରେ ପ୍ରତିଷ୍ଠିତ । ମୁଁ କିନ୍ତୁ ସେଇ ପାଠପଢ଼ାକୁ ଗୌଣ ମନେ କରି, ଗୋଟାଏ ନାଟୁଆ ଜୀବନ ଧାରଣ କରି ଆଜି ହାରିଯାଇଛି ବୋଲି ମନେକରୁଛି ।”

ଧୀରବାବୁଙ୍କର ଏ ଥିଲା ଏକାନ୍ତ ବ୍ୟକ୍ତିଗତ ମନ୍ତବ୍ୟ । ଏଇ ମନ୍ତବ୍ୟର ଉତ୍ତର ଦେବାକୁ ଯାଇ ମୁଁ ତାଙ୍କୁ ଶୁଣାଇଥିଲି—ବୁଝିଲେ ଆଜ୍ଞା ! ବହୁତ ପାଠପଢ଼ି, ବଡ଼ ବଡ଼ ଚାକିରି କରି ଆପଣଙ୍କର ଯେଉଁ ବନ୍ଧୁମାନେ ବିଭିନ୍ନ କର୍ମକ୍ଷେତ୍ରରେ ପ୍ରତିଷ୍ଠିତ, ସେମାନେ ଆଜି ନା କାଲି ହଜିଯିବେ । ଆଉ ସେମାନଙ୍କ କର୍ମମୟ ଜୀବନର ସକଳ ସୁନାମ ମଧ୍ୟ

ହଜିଯିବ । ତାଙ୍କର ରକ୍ତ ମାଂସ ଈଶ୍ୱର ମାଟିରେ ମିଶିଗଲା ପରେ ପରେ ସମସ୍ତେ ତାଙ୍କୁ କିଛିଦିନ ପରେ ଭୁଲିଯିବେ ।

ହେଲେ ଆପଣଙ୍କ ପରି ଅଭିନେତାମାନେ ଏ ସମାଜ ଆଗରେ ଗୋଟିଏ ଗୋଟିଏ ହାତୀ ହୋଇ ରହିଯିବେ । ଆପଣମାନଙ୍କ ଅଭିନୟ କଳା ପାଇଁ ଆଜି ଓଡ଼ିଆ ନାଟ୍ୟଜଗତ ଧନ୍ୟ ହୋଇ ପାରିଛି । ହାତୀ ସିନା ବଞ୍ଚିଥିଲେ ଲକ୍ଷେ ଟଙ୍କା ଆଉ ମଲେ ମଧ୍ୟ ଲକ୍ଷେ ଟଙ୍କା । କିନ୍ତୁ ଜଣେ ପ୍ରତିଭାସମ୍ପନ୍ନ, ସାଧନାନିଷ୍ଠ ଅଭିନେତାର ଜୀବନ ଯେ କେତେ ମୂଲ୍ୟବାନ, ତା'ର ମୂଲ୍ୟାୟନ କରିହେବ ନାହିଁ ।

ଏ ଜାତି ଆପଣଙ୍କୁ ସେ ସ୍ୱୀକୃତି ଦେଇ ପାରିଛି । ଓଡ଼ିଶା ରାଜ୍ୟ ପର୍ଯ୍ୟଟନ, କ୍ରୀଡ଼ା ଓ ସଂସ୍କୃତି ବିଭାଗ, ଭୁବନେଶ୍ୱର ଆନୁକୂଲ୍ୟରେ ଗତ ୧୯୮୪ ମସିହାରେ ଯେଉଁ ଚଳଚ୍ଚିତ୍ର ଉତ୍ସବ ଅନୁଷ୍ଠିତ ହୋଇଥିଲା, ସେଥିରେ ୧୯୮୧ ମସିହା ଓଡ଼ିଆ ଚଳଚ୍ଚିତ୍ର "ପୂଜା"ର ପାର୍ଶ୍ୱ ଅଭିନେତା ଭାବେ ଆପଣଙ୍କୁ ଯେଉଁ ସମ୍ମାନିତ କରାଗଲା, ତାହା କ'ଣ ଆପଣଙ୍କ ପ୍ରତିଭାକୁ ଚିରଦିନ ପାଇଁ ଏ ଜାତି ନିକଟରେ ବଞ୍ଚାଇ ରଖିନି ।

ଏହା ପୂର୍ବରୁ ଗତ ୨୮ । ୧ । ୭୮ ମସିହାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଆପଣଙ୍କ ପ୍ରତିଭାକୁ ସମ୍ମାନ ଦେବାକୁ ଯାଇ ଏକ ମାନପତ୍ରରେ ଉଲ୍ଲେଖ କରିଛନ୍ତି –

ଶ୍ରୀ ପ୍ରିୟନାଥ ମିଶ୍ର ମହୋଦୟ,

ଓଡ଼ିଆ ରଙ୍ଗମଞ୍ଚରେ ଆପଣ ଜଣେ ପ୍ରତିଭାସମ୍ପନ୍ନ, ସାଧନାନିଷ୍ଠ ଅଭିନେତା ଓ ନିର୍ଦ୍ଦେଶକ । ବହୁବର୍ଷ ଧରି ଓଡ଼ିଶାର ପେଶାଦାର ରଙ୍ଗମଞ୍ଚରେ ଆପଣ ନାୟକ, ଖଳନାୟକ ଓ ବିଭିନ୍ନ ଚରିତ୍ର ଭୂମିକାରେ ଅଭିନୟ କରି ସ୍ୱୀୟ ପ୍ରତିଭାର ପରିଚୟ ଦେଇ ଅଛନ୍ତି । ବେତାର ନାଟକ ଓ ଚଳଚ୍ଚିତ୍ର ଅଭିନୟରେ ମଧ୍ୟ ଆପଣ ଜଣେ ଯଶସ୍ୱୀ କଳାକାର ।

ଓଡ଼ିଶା ନାଟ୍ୟ ଜଗତକୁ ଆପଣଙ୍କ ଅନବଦ୍ୟ ଅବଦାନ ନିମନ୍ତେ ଆଜି ଏହି ଶୁଭ ଅବସରରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଆପଣଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜ୍ଞାପନ କରୁଅଛି ।

କୁହନ୍ତୁ ଦେଖି ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର ସମ୍ପାଦକ ଓ ସଭାପତିଙ୍କ ସ୍ୱାକ୍ଷର ଥିବା ଏପରି ଏକ ମାନପତ୍ର ଲାଭ କରି ଆପଣଙ୍କ ପରି ଜଣେ କଳାକାରର ଜୀବନ କ'ଣ ଧନ୍ୟ ହୋଇନ ? ଏହା ଫଳରେ ଅଭିନୟ ଜଗତରେ ଆପଣ ଅଧିକ ଉତ୍ସାହିତ ହୋଇ ଏକ ଭିନ୍ନ ସ୍ୱାଦର ରୁଚି ପାଇଁ କ'ଣ ଅଧିକ ଉଦ୍ୟମ କରି ନଥିବେ ?

୧୯୮୪ ମସିହାରେ ବଂଶଭୂଜା କଳା ସଂସଦ ଆପଣଙ୍କୁ "ନାଟ୍ୟ ରଥୀ" ଉପାଧିରେ ଭୂଷିତ କରିଛି ।

ଯେଣ୍ଟୁ ଅଭିନୟ କଳା ପାଇଁ ଆପଣଙ୍କ ଜୀବନ ଉତ୍ସର୍ଗୀକୃତ । ଏଥିପାଇଁ ଆପଣଙ୍କର ଅସୀମ ତ୍ୟାଗ ଓ ଅପୂର୍ବ କଳା ନୈପୁଣ୍ୟହିଁ ଆପଣଙ୍କୁ ଜଣେ ଅପ୍ରତିଦ୍ୱନ୍ଦୀ କଳାକାର ରୂପେ ଓଡ଼ିଶାର ରଙ୍ଗ ମଞ୍ଚରେ ସୁପରିଚିତ କରିପାରିଛି । ଅଭିନୟ କଳାରେ ଆପଣ ଜଣେ ମହାନ ସାଧକ । ଆପଣଙ୍କ ସାଧନାର ପଟାନ୍ତର ନାହିଁ ।

ଅନେକ ସୁଖ, ଦୁଃଖ ଆଉ ହସ, କାନ୍ଦଭରା ଦୁନିଆଁରେ ଯିଏ ଏସବୁକୁ ଖାଲି ନଜର ଅଭିନୟରେ ଫାଙ୍କି ଦେଇଛି, ନିଜର ନିଷ୍ଠା ଓ ସାଧନାରେ ଯିଏ କେତେ ଲୁହ ଲହରି ଝରଣାକୁ ପହଁରି ଆସିଛି କେବଳ ରଙ୍ଗମଞ୍ଚରେ ନିଜର ଅଭିନୟ ଦେଖାଇ ଦେଖାଇ ; ସେହି ଆମର ପ୍ରତିଭାଧାରୀ କଳାକାରଙ୍କୁ ଆମେ କାହା ସାଙ୍ଗରେ ତୁଳନା କରିବା !

ସେମାନେ ପରା ଈଶ୍ୱରଙ୍କର ବରପୁତ୍ର । ଅମୃତର ସନ୍ତାନ ସେମାନେ । ତାଙ୍କର ଅସାଧାରଣ ପ୍ରତିଭା ନିକଟରେ ଏ ଜାତିର ସବୁ ଶ୍ରେଣୀର ଲୋକଙ୍କ ମୁଣ୍ଡ ସ୍ୱତଃ ନଇଁ ଆସେ ।

ଏ କ୍ଷେତ୍ରରେ କେତେକ ଉଚ୍ଚ ଶିକ୍ଷିତ ବନ୍ଧୁ ସେହିମାନେ କି ବଡ଼ ବଡ଼ ଚାକିରିରେ ଅବସ୍ଥାପିତ ହୋଇପାରିଥିବାର ଦେଖି ପୀରି ମିଶ୍ରଙ୍କ ପରି ଜଣେ କୁଶଳୀ ଅଭିନେତା ଯଦି କହନ୍ତି ଯେ ସେ ଗୋଟାଏ ନାଟୁଆ ଜୀବନ ଧାରଣ କରି ଆଜି ହାରିଯାଇଛନ୍ତି ବୋଲି, ଏଥିରେ କେବଳ ହସିବା ଛଡ଼ା ଆଉ କିଛି ନ କହିଲେ ଭଲ ।

ଏତିକି ମୋ ମୁହଁରୁ ବାହାରି ପଡ଼ିବା ପରେ ପରେ ପୀରିବାବୁ ଠୋ, ଠୋ ହୋଇ ହସି ଥିଲେ । ତାପରେ କହିଥିଲେ—

ସତରେ ଆପଣ ଯେଉଁ ମନ୍ତବ୍ୟ ଦେଲେ, ମୋର ଜଣେ ବନ୍ଧୁ ମଧ୍ୟ ଠିକ୍ ଅନୁରୂପ ମନ୍ତବ୍ୟ ଦେଇଥିଲେ । ହେଲେ ପାଠପଢ଼ା ଗୁଡ଼, ଶେଷରେ ଅଭିନୟ ପଛରେ ଧାଇଁ ଧାଇଁ ମୁଁ ଯେ ଅଧିକ ସୁନାମ ଅର୍ଜନ କରିବି ଏକଥା କେବେ ମୋ ମନକୁ ଛୁଇଁ ନଥିଲା କି ମୁଁ ସ୍ୱପ୍ନରେ ସୁଦ୍ଧା ଚିନ୍ତା କରି ନଥିଲି ।

ଆଚ୍ଛା କହନ୍ତୁ ପୀରବାବୁ, ଆପଣ କାହିଁକି ଏବଂ କିପରି ଏହି ଅଭିନୟ କଳାପ୍ରତି ଆକୃଷ୍ଟ ହେଲେ । ଆପଣଙ୍କ ପରିବାରର ଏହି କଳାପ୍ରତି କାହାର ଆଗ୍ରହ ଥିଲା କି ? ଉତ୍ତରରେ ଶୁଣିବାକୁ ମିଳିଲା—

ବେବର୍ତ୍ତା ବଂଶରେ ସଙ୍ଗୀତ, ବାଦ୍ୟଯନ୍ତ୍ର କି ଅଭିନୟ କଳା ପ୍ରତି କାହାରି ଆଗ୍ରହ ନଥିଲା । ଏ ବଂଶରେ ହୁଏତ ଅଭିନୟ ଦେଖିବାକୁ କେତେକଙ୍କର ଆଗ୍ରହ ଥିଲା କିନ୍ତୁ ଅଭିନେତା ଆଉ ଅଭିନେତ୍ରୀମାନଙ୍କୁ ସେମାନେ ପ୍ରାୟ ସମସ୍ତେ ଘୃଣା କରୁଥିଲେ ।

ଅଭିନେତା ଆଉ ଅଭିନେତ୍ରୀ—ଏମାନଙ୍କର ବଳିଷ୍ଠ ପ୍ରତିଭା ଥାଇପାରେ, ହେଲେ ଆଦର୍ଶ ଚରିତ୍ର ନାହିଁ । ସେମାନଙ୍କ ଜୀବନ କଳଙ୍କିତ । ଏ ଧାରଣା ବେବର୍ତ୍ତା ବଂଶର ଦୃଢ଼ତର ଥିଲା ।

କଟକ ଜିଲ୍ଲାର ସାଲେପୁର ନିକଟବର୍ତ୍ତୀ ଖଣ୍ଡସାହି ଏକ ନାଉଁଆ ଗାଁ । ଏ ଗାଁରେ ଅନେକ ଜ୍ଞାନୀ, ଗୁଣୀ ତଥା ପ୍ରତିଭାସମ୍ପନ୍ନ ବ୍ୟକ୍ତି ଜନ୍ମ ଲାଭ କରିଛନ୍ତି । ସ୍ୱାଧୀନତା ସଂଗ୍ରାମରେ ଦେଶ ଓ ଜାତିପାଇଁ ଅନେକ ଯୁବକ ମଧ୍ୟ ଏଇ ଗାଁରୁ ଝାସଦେଇଥିଲେ ।

ବ୍ରିଟିଶ ରାଜତ୍ୱ କାଳରେ ଯେତେବେଳେ ଅଧିକାଂଶ ଗାଁ ଗହଳରେ ଲୋକେ ଡ୍ରାମା ବା ଥିଏଟର କ'ଣ ଜାଣିନଥିଲେ । ଦେଖିବାକୁ ପାଉ-ନଥିଲେ । ସେତେବେଳେ ସାଲେପୁର ଗାଁର ସ୍କୁଲ କଲେଜରେ ପଢ଼ୁଥିବା ପିଲାଏ ଛୁଟିଦିନଗୁଡ଼ିକରେ ଗାଁକୁ ଆସି ପ୍ରତିବର୍ଷ ଥିଏଟର କରୁଥିଲେ । ଥରେ ଥରେ ଦୁଇ ତିନିରାତି ଧରି ଗାଁ ଖାଲି ଥିଏଟରରେ କମ୍ପୁଥିଲା ।

ପୀରବାବୁ ବର୍ତ୍ତମାନ ଜୀବନର ଶେଷ ଅଙ୍କରେ ପଦାର୍ପଣ କଲେଣି । ତଥାପି ତାଙ୍କର ସୁନ୍ଦର ସ୍ୱାସ୍ଥ୍ୟ ବାର୍ଦ୍ଧକ୍ୟକୁ ଫାଙ୍କି ଦେଉଛି ।

ତେଣୁ ଗୃହ ଜୀବନରେ ସେ ଯେ କେତେ ସୁନ୍ଦର ଥିବେ ତାହା ଏଇଥିରୁ ସହଜରେ ଅନୁମେୟ ।

ଗୃହଜୀବନରେ ସେ ଦେଖିବାକୁ ଯେପରି ସୁନ୍ଦର ଥିଲେ ସେହିପରି ଥିଏଟରରେ ପୁରୁଷ ତଥା ସ୍ତ୍ରୀ, ଉଭୟ ଭୂମିକାରେ ମଧ୍ୟ ଅତି ସୁନ୍ଦର ଅଭିନୟ କରିପାରୁଥିଲେ । ଅଭିନୟ କଳା ତାଙ୍କର ଈଶ୍ୱର ଦତ୍ତ ।

ପିତୃକୁଳରେ ସିନା ଏଇ କଳା ପ୍ରତିଭା ତାଙ୍କ ବ୍ୟତୀତ ଆଉ କାହାରି ଠାରେ ନଥିଲା । ହେଲେ ମାତୃକୁଳରେ ସେ ଏହି ପ୍ରତିଭାର ସନ୍ଧାନ ପାଇଥିଲେ । ତାଙ୍କ ମାମୁଁ ସେତେବେଳେ ଏଲ୍. ଆଇ. ସି.ର ଜଣେ ଫିଲ୍ଡ଼ ଅଫିସର ଥିଲେ । ସେ ବାଦ୍ୟଯନ୍ତ୍ରର ଖୁବ୍ ପ୍ରିୟ ଥିଲେ । ସୁନ୍ଦର ବଜାବଜି କରି ପାରୁଥିଲେ । ଖାଲି ସେତିକି ନୁହେଁ, ତାଙ୍କ ମାମୁଁ ଅଜା ମଧ୍ୟ ଜଣେ ସୁନ୍ଦର ବଂଶୀବାଦକ ଥିଲେ । ତେଣୁ ତାଙ୍କ କଳାପ୍ରିୟ ଜୀବନକୁ ମାମୁଁ ଘରର ପ୍ରଭାବ ଅଧିକରୁ ଅଧିକ ପ୍ରଭାବିତ କରି ପାରିଥିଲା ବୋଲି ସେ ମୁକ୍ତ କଣ୍ଠରେ ସ୍ୱୀକାର କରନ୍ତି । ଯାହା ଫଳରେ କି ସେ କଳା ଜଗତକୁ ଆକୃଷ୍ଟ ହୋଇ, ଆଜି ଅଭିନୟ କଳାକୁ ଜୀବନର ସର୍ବସ୍ୱ ଜ୍ଞାନ କରିଛନ୍ତି ।

ସାଲେପୁରର ଏକ ସୁସ୍ଥ ପରିବେଶ ମଧ୍ୟରେ ଧୀର ମିଶ୍ରଙ୍କର ଜନ୍ମ । ତାଙ୍କ ପିତାଙ୍କ ନାମ ବେବର୍ତ୍ତା ବୃନ୍ଦାବନ ମିଶ୍ର ଯେ କି ଦୀର୍ଘ ୮୭ ବର୍ଷ ବୟସରେ ଦେହତ୍ୟାଗ କରିଥିଲେ ଏବଂ ମାତା ଲାବଣ୍ୟବତୀ ଦେବୀ ଦୀର୍ଘ ୮୨ ବର୍ଷ ବୟସରେ ସେ ପୁରକୁ ବାହୁଡ଼ିଥିଲେ ।

ସେ କହନ୍ତି—ବେବର୍ତ୍ତା ହେଉଛି ତାଙ୍କର ଏକ ରାଜଦତ୍ତ ଉପାଧି । ବେବର୍ତ୍ତା ବଂଶ ଜମିଦାର ଥିଲେ । ୧୯୧୪ ମସିହା ମେ ମାସ ୮ ତାରିଖ ଦିନ ଏହି ଜମିଦାର ବଂଶରେ ଧୀରବାବୁଙ୍କର ଜନ୍ମ ।

ବାଲ୍ୟକାଳରୁ ଭଲ ଖାଇ, ଭଲ ପିନ୍ଧି ଜୀବନକୁ ହସିଖେଳି କଟାଇବାର ସକଳ ସୁବିଧା ସୁଯୋଗ ସେ ଲାଭ କରିଥିଲେ ।

ତାଙ୍କ ପିତାଙ୍କର ଦୁଇଟି ପୁତ୍ର ଓ ଗୋଟିଏ କନ୍ୟା ଥିଲେ । ଧୀରବାବୁ ହେଉଛନ୍ତି କନିଷ୍ଠ ଓ ସୀତାନାଥ ମିଶ୍ର ହେଉଛନ୍ତି ଜ୍ୟେଷ୍ଠ ।

ସେ ଏକ ଫିନାଇଲ୍ କମ୍ପାନୀର ମାଲିକ । ଏବେ ସେ ଜୀବିତ ଅଛନ୍ତି । ପ୍ରାୟ ୮୪ ବର୍ଷ ବୟସରେ ସେ ପଦାର୍ପଣ କଲେଣି ।

ଦୁଇ ଭାଇଙ୍କର ଏକମାତ୍ର ଭଉଣୀ ବସନ୍ତକୁମାରୀ ପ୍ରାୟ ୭୪ ବର୍ଷ ବୟସରେ ଦେହତ୍ୟାଗ କରିଛନ୍ତି । ପୀରବାବୁଙ୍କର ପ୍ରଥମ ଶିକ୍ଷା ଲାଭ ହୁଏ ଖଣ୍ଡିସାହି ଅପର ପ୍ରାଇମେରୀ ସ୍କୁଲରେ । ତାପରେ ମାଇନର୍ ପଢ଼ା ଆରମ୍ଭ ହୁଏ କାନପୁରରେ ଏବଂ ମାଇନର୍ ପାଶ୍ କରିଥିଲେ ଅସୁରେଶ୍ୱର ମାଇନର୍ ସ୍କୁଲରୁ ।

ଏହାପରେ କଟକ ସହରର ପ୍ୟାରୀମୋହନ ଏକାଡେମୀରେ ଆସି ସେ ମାଟ୍ରିକ ପଢ଼ିଲେ । ୧୧ଶ ଶ୍ରେଣୀରେ ପଢ଼ୁଥିଲାବେଳେ ପାଠ ପଢ଼ାରେ ତାଙ୍କର ପୂର୍ଣ୍ଣଚ୍ଛେଦ ପଡ଼ିଲା ।

ଦେଶର ସ୍ୱାଧୀନତା ସଂଗ୍ରାମରେ ହଜାର ହଜାର ଛାତ୍ରଛାତ୍ରୀ ସ୍କୁଲ୍ କଲେଜ ଛାଡ଼ି ନିଜ ନିଜର ଜୀବନକୁ ଉତ୍ସର୍ଗ କରିଥିଲେ । ତାଙ୍କ ଗାଁ ଖଣ୍ଡିସାହିରୁ ମଧ୍ୟ ଅନେକ ପଢ଼ୁଆ ଯୁବକ ପାଠପଢ଼ା ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ସେହି ଯୁବକ ବନ୍ଧୁମାନଙ୍କ ମଧ୍ୟରୁ ସର୍ବଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ, ବ୍ରଜନାଥ ମିଶ୍ର ଓ ପ୍ରାଣନାଥ ମିଶ୍ରଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଏହାପରେ ତାଙ୍କ ଜୀବନର ଗତିପଥ ବଦଳିଗଲା । ତାଙ୍କ ମନରେ ଉଙ୍କି ମାରିଲା ନିଜର "ଜୀବନ ଓ ଜୀବିକା" । ବାପା ସିନା ତାଙ୍କର ଜମିଦାର ହେଲେ ନିଜେ ତ ନିଜ ପେଟ ଖଣ୍ଡିକୁ ପୋଷିବା ପାଇଁ ସମ୍ପୂର୍ଣ୍ଣ ଅକ୍ଷମ । କେତେ ଦିନ ଅବା ଆଉ ପିତାଙ୍କ ହାତକୁ ସେ ଚାହିଁ ରହିବେ ।

ଏହି ସମସ୍ୟାର ସମାଧାନ କରିବାକୁ ଯାଇ ସେ ଆରମ୍ଭ କରନ୍ତି ଚାକିରି ଜୀବନ । ଜଣେ ମେଡ଼ିସିନ୍ ରିପ୍ରେଜେଣ୍ଟେଟିଭ ଭାବେ । ଏଥିପାଇଁ ତାଙ୍କୁ ଘର ଛାଡ଼ିବାକୁ ପଡ଼ିଲା ।

କିନ୍ତୁ ବଡ଼ ଆଶ୍ଚର୍ଯ୍ୟ କଥା, ମାତ୍ର ଦୁଇବର୍ଷ ପରେ ସେ ଉକ୍ତ ଚାକିରିକୁ ଛାଡ଼ିଦେଇ ପୁଣି ଘରକୁ ଫେରି ଆସିଥିଲେ ।

ସେତେବେଳକୁ ତାଙ୍କର ବୟସ ଥିଲା ୨୦।୨୨ ବର୍ଷ । ଜମିଦାର ଘର ପୁଅ ବୋଲି ସେ କ'ଣ ଖାଲି ବସି ଖାଇବେ । ବସିଖାଇଲେ ପର୍ବ ନଈ ବାଲି ସରିଯାଏ ବୋଲି ପ୍ରବାଦ ଅଛି । ତେଣୁ ସେ ଖଟି ଖାଇବାକୁ ଉଚିତ୍ ମନେ କରୁଥିଲେ ।

ତାଙ୍କ ପୂର୍ବରୁ ବେବର୍ତ୍ତୀ ବଂଶରେ କେହି କେବେ ଚାକିରି କରି ନଥିଲେ । ସମସ୍ତେ ଥିଲେ ସ୍ୱାଧୀନଚେତା । ସ୍ୱାଧୀନ ଭାବରେ ଶ୍ରମ କରି ବଞ୍ଚିରହିବାକୁ ସେମାନେ ଖୁବ୍ ପସନ୍ଦ ମନେ କରୁଥିଲେ । କେବଳ ପୀର ମିଶ୍ର ହେଲେ ଏହି ବଂଶର ଏକ ବ୍ୟତିକ୍ରମ । ସେ ସର୍ବପ୍ରଥମେ ଆରମ୍ଭ କରିଦେଲେ ନିଜର ଚାକିରି ଜୀବନ ।

ଆଉ ଯେତେବେଳେ ସେ ମେଡ଼ିସିନ୍ ରିପ୍ରେଜେଣ୍ଟେଟିଭ ଚାକିରି ଛାଡ଼ି ଦେଇ ଘରକୁ ଫେରି ଆସିଛନ୍ତି ବୋଲି ତାଙ୍କର ମା ଜାଣିବାକୁ ପାଇଲେ, ସେତେବେଳେ ସେ ହସି ହସି ତାଙ୍କୁ ଶୁଣାଇଥିଲେ—

—ବୁଝିଲୁ ପୁଅ । ଆମ ବଂଶରେ କେହି ତ କେବେ ଚାକିରି କରି ନାହାନ୍ତି । ଆଉ ତୁ ସେ ଚାକିରି କରନ୍ତୁ ଅବା କପର । ଚାକିରି ଛାଡ଼ି ଦେଇଛୁ, ଖୁବ୍ ଭଲ କରିଛୁ ।

ସେ ଚାକିରି ଛାଡ଼ିବା କଥା, ତାଙ୍କ ବାପା ମଧ୍ୟ ଶୁଣି ଖୁସି ହୋଇଯାଇ, ମା'ଙ୍କ ପରି ଅନୁରୂପ ଦୁଇପଦ ଶୁଣାଇବା ସଙ୍ଗେ ସଙ୍ଗେ ତାଙ୍କୁ ଅତି ଆଦରରେ ପାଖକୁ ଡାକି ବୁଝାଇଥିଲେ—

—ବୁଝିଲୁ ବାପ, ଜମିଦାର ପିଲା, ନିଜର ଗୃହବାସ ଖବର ବୁଝ । ସ୍ୱାଧୀନ ଜୀବନ ଯାପନ କର । ପରାଧୀନ ହୋଇ ଯେତେ ଯାହା କମାଇଲେ କ'ଣ ବାସ୍ତବ ସୁଖ ଶାନ୍ତି ମଣିଷ କେବେ ପାଇଛି, ନା ପାଇବ । ପର ଘରେ ମୁଣ୍ଡ ବିକି ଖଟିବା ଆଉ ନିଜ ଘରେ ନିଜେ ଖଟି ଅନ୍ୟମାନଙ୍କୁ ଖଟାଇବାରେ ହିଁ ଯେଉଁ ଆନନ୍ଦ, ଯେତେ ସୁଖ ଶାନ୍ତି ସେ ସବୁ ଖାଲି ଅନୁଭୂତିର କଥା ।

ଏହାପରେ ସେ କିଛି ସମୟ ନୀରବ ରହି, ପୁଣି ବାପାଙ୍କୁ ବିନୟ ଭାବେ ଜଣାଇଥିଲେ—

—ନାଇଁ ନନା, ମୁଁ ଘରେ ରହି ପାରିବ ନାହିଁ । ଗୃହକର ଘୁଞ୍ଚି ଘରକୁ ପଳାଇ ଆସିଲି ଗୋଟାଏ ଥିଏଟର ଦଳରେ ରହି ଅଭିନୟ କରିବି ବୋଲି । ଏହା ମୋପାଇଁ ଆଉ ଏକପ୍ରକାର ନୂଆ ଗୃହକର କହିଲେ ଚଳେ ।

ପୁଅଠାରୁ ଏତେକ ଶୁଣି ବେବର୍ତ୍ତା ବୃନ୍ଦାବନ ମିଶ୍ର ରାଗରେ ଖାଲି ନିଆଁ ହୋଇ ଗଲେଣି । ନିଜ ପୁଅ କଥା । କ'ଣ କରିବେ କାହାକୁ ଅବା କହିବେ ।

ତାପରେ ସେ ସିଂହ ପରି ଗର୍ଜିଉଠି କହିଲେ, ହଇରେ ହେ କୁଳାଙ୍ଗାର, ତୁ ଥିଏଟର ଦଳରେ ରହି ନାଚ କରିବୁ । ବେବର୍ତ୍ତା ବଂଶରେ କଳଙ୍କ ଲଗାଇ ଆମ ମୁଣ୍ଡକୁ ତଳକୁ କରିବୁ । ତୋ ମୁଣ୍ଡରେ ଏ ଭୂତ କିଏ ପୂରାଇଲା । ତୋତେ ଟିକେ ଲଜ ମାଡ଼ିଲା ନାହିଁ, ଏପରି ଏକ ସିଦ୍ଧାନ୍ତ ତୁ ନେଲୁ !

ଆରେ, ତୁ ଜାଣିଛୁ ? ଅତି ବେହିଆ, ନାଚରେ ଯାଆନ୍ତି । ନାଚ ଥିଏଟର କରୁଥିବା ଲୋକଗୁଡାକ ନିହାତି ଚରିତ୍ରହୀନ । କ୍ଷଣଘଣ୍ଟା ପାଇଁ ଲୋକେ ତାଙ୍କ ଅଭିନୟ ଦେଖି ଆମୋଦିତ ହୁଅନ୍ତି ସତ ହେଲେ ପରମୁହୂର୍ତ୍ତରେ ସେଇ ଅଭିନେତା ଅଭିନେତ୍ରୀମାନଙ୍କୁ ଦେଖିଲେ ସମସ୍ତେ ନାକ ଟେକନ୍ତି । ମୁହଁ ମୋଡ଼ନ୍ତି । ଆମ ସମାଜ ତାଙ୍କୁ ଘୃଣା କରେ, ଭିନ୍ନ ଦୃଷ୍ଟିରେ ଦେଖେ ।

ତୁ ସେପରି ଭୁଲ୍ କରନା । ଆମକୁ ସୁଖ ଶାନ୍ତିରେ ବଞ୍ଚିବାକୁ ଦେ । ତୁ କ'ଣ ଚାହୁଁଛୁ ଆମେ ଆଉ ଦାଣ୍ଡରେ ମୁଣ୍ଡଟେକି ଚାଲିବୁ ନାହିଁ । କାହିଁକି ଆମକୁ ଲୋକହସା କରାଇବୁ କହ ?

ନନା ତାଙ୍କର ଏହିପରି କେତେକଣ ହୀନ ମନ୍ତବ୍ୟ ଦେଇ ବକି ଚାଲିଥାନ୍ତି । ହେଲେ ତାର ପ୍ରତିବାଦରେ ଦୁଇପଦ ସନ୍ତୋଷଜନକ ଉତ୍ତର ଦେବାରେ ପାରିବାକୁ ହାର ଯାଇଥିଲେ ସେଦିନ ।

କ'ଣ କରିବେ ! କିପରି ଭାବରେ ବାପାଙ୍କ ମନରୁ ଏ ଭ୍ରାନ୍ତ ଧାରଣାକୁ ଦୂର କରିବେ । କିମିତି କହିବେ ସେ, ନାଇଁ ନନା, ଅଭିନେତା

ଅଭିନେତ୍ରୀମାନଙ୍କୁ ଘୃଣା କର ନାହିଁ । ସେମାନେ ଈଶ୍ୱରଙ୍କ ଅଭୟ ଲାଭକରି ଗୋଟିଏ ଗୋଟିଏ ଅସାଧାରଣ ପ୍ରତିଭାର ଅଧିକାରୀ । ଜନଜୀବନକୁ ରଙ୍ଗମଞ୍ଚରେ ହସାଇ, ରସାଇ ସେମାନେ ହୃଦୟକୁ ଜିଣି ନଅନ୍ତି ।

ରଙ୍ଗ ମଞ୍ଚରେ ନିଜେ ନହସି ଯିଏ ଅନ୍ୟକୁ ହସାଏ । ନିଜର ସୁଖ ଦୁଃଖ ଭୁଲି ଯିଏ ଅନ୍ୟମାନଙ୍କ ମନରେ ଆନନ୍ଦର ଜୁଆର ସୃଷ୍ଟି କରେ, ପ୍ରତିଦାନରେ କ'ଣ ତାପାଇଁ ଖାଲି ନିନ୍ଦା, ଅପମାନ ! ଏଇ କ'ଣ ଆମ ସମାଜର ରୁଚି ! ଏଇ କ'ଣ କଳାକାର ଜୀବନର ଏକମାତ୍ର ଉପହାର !

ସେ ଯାହାହେଉ ପୀରବାବୁ କିନ୍ତୁ ତାଙ୍କ ସିଦ୍ଧାନ୍ତରେ ଅଟଳ ଅଟଳ ରହିଲେ । ଆଉ ଶେଷ ଥର ପାଇଁ ଯେତେବେଳେ ନନା ତାଙ୍କର କହିଲେ—

—କ'ଣ କହୁଛୁ କହ ? ସତରେ କ'ଣ ତୁ ଥିଏଟର ଦଳରେ ରହି ଅଭିନୟ କରିବୁ । ତୋର ସିଦ୍ଧାନ୍ତରୁ ତୁ କ'ଣ ଓହରି ଆସିବୁ ନାହିଁ ?

ଉତ୍ତର ମିଳିଥିଲା, ମୋତେ କ୍ଷମା କରିବେ ନନା, ମୁଁ ଘରେ ରହି ପାରିବି ନାହିଁ କି ଅଭିନେତା ହେବା ପାଇଁ ଯେଉଁ ସିଦ୍ଧାନ୍ତ ନେଇଛି ସେଥିରୁ କଦାପି ଓହରି ଯିବି ନାହିଁ । ସେଥିପାଇଁ ଆପଣ ଯେଉଁ ଶାସ୍ତି ବିଧାନ କରିବେ ତାକୁ ମୁଁ ମୁଣ୍ଡପାତି ଗ୍ରହଣ କରିନେବି ।

ଏତିକିରେ ସତେ ଯେପରି ତାଙ୍କ ମୁଣ୍ଡରେ ବଜ୍ରପାତ ହେଲାପରି, ନନା ସେଦିନ ଶୁଣାଇଲେ—

—ଠିକ୍ ଅଛି । ଆଜିଠାରୁ ଏ ଘରର ଦ୍ୱାର ତୋ ପାଇଁ ବନ୍ଦ ହୋଇଗଲା । ତୁ ଯେପରି ଆଉ ଏ ଗାଁ ମାଟି ନ ମାଡ଼ୁ । ସାବଧାନ । ଏହାପରେ ସେ ଘୃଣା ଓ ରାଗରେ ନିଜ ମୁହଁକୁ ପଛ ଆଡ଼କୁ ବୁଲାଇ ଦେଇଥିଲେ ।

ପୀର କିନ୍ତୁ ପୀର ଭଳି ନିଜ ସିଦ୍ଧାନ୍ତରେ ଅଟଳ, ଅଟଳ ରହି ଘରୁ ଗୋଡ଼କାଢ଼ି ପଦାକୁ ଆସେଇଲାବେଳେ ତାଙ୍କ ପ୍ରାଣରେ ଅସହାୟର ଏକ ଝଡ଼ ସୃଷ୍ଟି ହେଉଥିଲା । ଆଉ ସତେ ଯେପରି ସେ ନନାଙ୍କୁ

ତାଙ୍କର ଶୁଣାଉଥାନ୍ତି, ଠିକ୍ ଅଛି ନନା । ପିତୃସତ୍ୟ ପାଳନ କରି ଦିନେ ରାମଚନ୍ଦ୍ର, ରାଜ୍ୟ ତ୍ୟାଗ କରି ବନବାସ କଲେ । ମୁଁ ସେଇ ଦେଶର, ସେଇ ମାଟିର ଛୁଆ । 'ଜନ୍ମ ଦିଅନ୍ତି ଯିଏ ତାଙ୍କ ପାଇଁ ଭଗବାନ ଖାଦ୍ୟ ରଖିଛନ୍ତି । ତେବେ ପେଟ ରୁଖଣ୍ଡିକ ପାଇଁ ମୁଁ କାହିଁକି ଚିନ୍ତା କରିବି ।'

କ'ଣ ହେବ ଏ ଚେଡ଼ୁଆ ବଂଶର ଧନସମ୍ପଦ ମୋର । ବାହାରେ ଏତେ ବିପୁଳ ଜୀବନ । ତେବେ କ'ଣ ପାଇଁ ମୁଁ ଏ ଗାଁରେ କୂପ ମଣ୍ଡୁକ ହୋଇ ପଡ଼ି ରହିବି ।

ଆଖିରେ ଲୁହ, ହୃଦୟରେ କୋହ ଆଉ ମନରେ ଅଭିନୟ କରିବାର ଆବେଗକୁ ଧରି ସେ ଆସି ପହଞ୍ଚିଲେ କଟକ ସହରରେ ।

କଟକରେ ଆସି ପ୍ରଥମେ ତାଙ୍କର ଦଦେଇ ପୁଅ ଭାଇ ପ୍ରାଣ ମିଶ୍ରଙ୍କୁ ଦେଖା କଲେ । ନଈ ସୁଅରେ ଭାସିଯାଉଥିବା ଜୀବଟିଏ କୁଟାଖଣ୍ଡିକ ଦେଖି ଆଶ୍ରୟ ନେଉଁଲା ପରି ସେ ଦଦେଇଙ୍କୁ ଦେଖି ନିଜର ଦୁଃଖ ଭାରକୁ ଲାଘବ କରିଥିଲେ ।

ଦଦେଇ ତାଙ୍କର ଜାଣନ୍ତି ଯେ ଧୀର ତାଙ୍କର ଡ୍ରାମା କରିବା ପାଇଁ ପାଗଳ ହୋଇଯାଏ । ପ୍ରତିବର୍ଷ ସେ ଡ୍ରାମାରେ ପୁରୁଷ କମ୍ବା ନାରୀ ଉଭୟ ଭୂମିକାରେ ଅଭିନୟ କରି ଦର୍ଶକମାନଙ୍କଠାରୁ କରତାଳି ଧ୍ୱନି ଗ୍ରହଣ କରିଥାଏ । ସେଥିପାଇଁ ସେ ତାଙ୍କୁ ସାନ୍ତ୍ୱନାବାଣୀ ଶୁଣେଇ କହିଥିଲେ—ଆଚ୍ଛା ହଉ, ତୁ ବ୍ୟସ୍ତ ହୁଅନାହିଁ । ତୁ ନିଶ୍ଚୟ ତୋର ଲକ୍ଷ୍ୟ ପଥରେ ପହଞ୍ଚିପାରିବୁ । ତୋ ସାଧନାରେ ସିଦ୍ଧିଲାଭ କରି ଦିନେ ନା ଦିନେ କେବଳ ଝଣ୍ଡସାହି ଗାଁ କାହିଁକି ସମଗ୍ର ଓଡ଼ିଶାର ତୁ ନାଁ ରଖିବୁ ।

ତୋର ଅଭିନୟ ପାଇଁ ଦିନେନା ଦିନେ ଏ ଜାତି ଗର୍ବ କରିବ । ଅଭିନୟ ଆକାଶରେ ତୁ ହେବୁ ଏକ ଉଜ୍ଜ୍ୱଳ ତାରକା । ଘର କଥା ଭାବି ଆଉ ମନ ଦୁଃଖ କରନା ।

ଏବେ ନନା ରାଗିଛନ୍ତି । କିଛି ଦିନ ଯାଉ, ଦେଖିବୁ ସେଇ ନନା, ସେଇ ବୋଉ ପୁଣି ତୋତେ କୋଳକୁ ଟାଣିନେବେ ।

ଦତ୍ତଦେଇଙ୍କ ଠାରୁ ଶୁଭାଶିଷ ଲଭ କରି, ସେ ଆସି ପହଞ୍ଚଲେ ତାଙ୍କ ଭଣଜା ଶ୍ରୀଯୁକ୍ତ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ପାଖରେ । ମାମୁଁ ଭଣଜା ହେଲେ ବି ଉଭୟେ ସମବୟସ୍କ । ଉଭୟେ ସ୍କୁଲ ପାଠପଢ଼ା ଛାଡ଼ି କଂଗ୍ରେସରେ ମିଶି ଦେଶର ସ୍ୱାଧୀନତା ପାଇଁ ବହୁ ସଂଗ୍ରାମ କରି-ଥିଲେ ।

ଦ୍ୱିବେଦୀ ମହାଶୟ ସେତେବେଳେ ଗୋଟିଏ ମେସ କରି ରହୁ-ଥିଲେ । ତାଙ୍କ ଦୁହିଁଙ୍କ ଭିତରେ ମାମୁଁ, ଭଣଜାର ମାପଚୁପ ନଥାଏ । ଆମେ ଦୁହେଁ ସାଙ୍ଗସାଥୀ ପରି ଚଳୁଥିଲୁ । ତାଙ୍କର ମେସ୍‌ରେ ମୋର ରହିବା ଆଉ ଖାଇବାର ବନ୍ଦୋବସ୍ତ ସେ କରିଥିଲେ ।

ଘରୁ ତ ବାହାରି ଆସିଛନ୍ତି । ମେସରେ କ'ଣ ଖାଲି ପାଣି ପବନ ଖାଇ ଚଳିବେ । କଥାରେ ଅଛି, ଇଚ୍ଛା ଥିଲେ ଉପାୟ ଆପେ ଆପେ ଆସିଥାଏ । କଟକରେ ତାଙ୍କର ନାମ ବଶ ହୋଇଥାନ୍ତି । ଡାକ୍ତର କୁଳମଣି ମିଶ୍ର ତାଙ୍କର ଭଉଣୀ । ଡାକ୍ତର କୁଳମଣି ମିଶ୍ର ଓ ଆକୁଳ ମିଶ୍ର ଏଇ ଦୁଇ ଭଉଣୀ ତାଙ୍କୁ କଟକ ସହରରେ ଚଳିବା ପାଇଁ ଯଥେଷ୍ଟ ଟଙ୍କା ପଇସା ସାହାଯ୍ୟ କରିଥିଲେ । ମେସ୍‌ରେ ଖାଇବା ପାଇଁ ସେତେବେଳେ ପଡ଼ୁଥିଲା ତିନଟଙ୍କା ବାରଅଣା ମାତ୍ର । ମାସକୁ ମାସ ମେସ୍ ଖର୍ଚ୍ଚ ଠିକ୍ ସମୟରେ ମେସ୍‌ରେ ଦେଇଦେବାକୁ ବିଶେଷ କଷ୍ଟ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ୁନଥିଲା ।

ମାତ୍ର ୨୭ ବର୍ଷ ବୟସରେ ରଙ୍ଗମଞ୍ଚରେ ଅଭିନୟ କରି ସେ ବହୁ ପ୍ରଶଂସା, ବହୁ ମାନପତ୍ର ଲଭ କରି ପାରିଥିଲେ ।

୧୯୪୦ ମସିହା । କଟକ ସହରରେ ଗଢ଼ି ଉଠିଲା "ଓଡ଼ିଶା ଥିଏଟରର୍ସ ।" ନଟେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଥିଲେ ଏହି ଅନୁଷ୍ଠାନର ସ୍ରଷ୍ଟା ଓ ମାଲିକ ।

ଓଡ଼ିଶା ଥିଏଟର୍ସର ଅଭିନେତା ଓ ଅଭିନେତ୍ରୀ ପାଇଁ ବିଜ୍ଞାପନ ବାହାରିଲା । ସେଇ ଅନୁଷ୍ଠାନରେ ଅଭିନେତା ଭାବେ ଅଭିନୟ କରିବା ପାଇଁ ପୀରବାବୁ ଦରଖାସ୍ତ କଲେ । ତାଙ୍କ ମନକାମନା ପୂରଣ ହେଲା । ସେ ଅଭିନେତା ଭାବେ ନିର୍ବାଚିତ ହେଲେ । ଅଧିକ ଆନନ୍ଦର କଥା ଯେ ସେହି ଓଡ଼ିଶା ଥିଏଟର୍ସରେ ବାବି (ସାମୁଏଲ ସାହୁ) ବାବୁ ମଧ୍ୟ ଅଭିନେତା

ଘବେ ନବାଗତ ହେଲେ । ଏଇଠି ସତେ ଅବା ମଣିକାଞ୍ଚନର ସଂଯୋଗ ଘଟିଲା ।

ସେତେବେଳେ ଓଡ଼ିଶାରେ ସାମାଜିକ ନାଟକ ପ୍ରାୟ ନଥିଲା କହିଲେ ଚଳେ । କାଳୀବାବୁ ପ୍ରଥମେ ପ୍ରଥମେ ସାମାଜିକ ନାଟକ ଲେଖି ମଞ୍ଚସ୍ଥ କଲେ ।

ଗାର୍ଲ୍ସ ସ୍କୁଲ, ଆହୁତି, ଘାତ ଓ ଚୁମ୍ବନ ଆଦି ନାଟକଗୁଡ଼ିକୁ କାଳୀବାବୁ ଲେଖି ମଞ୍ଚସ୍ଥ କରିଥିଲେ । ଏହି ସବୁ ନାଟକରେ କେଉଁଥିରେ ମୁଖ୍ୟ ନାୟକ ତ କେଉଁଥିରେ ପାର୍ଶ୍ୱ ନାୟକ ଭୂମିକାରେ ଅଭିନୟ କରି ପୀର ବାବୁ ବହୁ ସୁନାମ ଅର୍ଜନ କଲେ ।

ଓଡ଼ିଶା ଥିଏଟର୍ସରେ ପ୍ରଥମେ ତାଙ୍କୁ ୭ ଟଙ୍କା ବେତନ ମିଳୁଥିଲା । ତାପରେ ୧୨ ଟଙ୍କା ଓ ଶେଷରେ ମାସକୁ ୫୫ ଟଙ୍କା ଦରମା ପାଉଥିଲେ । ଥିଏଟର ଖୁବ୍ ଭଲ ଚାଲିଲା । ବେଶ୍ ଦୁଇପଇସା ରୋଜଗାର ହେଲା । ଫଳରେ ଅଭିନେତା ଓ ଅଭିନେତ୍ରୀମାନେ ଆଉ ୨୫% ଦରମା ବଢ଼ାଇବା ପାଇଁ କାଳୀବାବୁଙ୍କ ନିକଟରେ ଦାବି କଲେ । ସେ କିନ୍ତୁ ସେଥିରେ ଅନଭିଜ୍ଞ ହୋଇ କୌଣସି ଆପତ୍ତି ବିଚାରକୁ ଆଣିଲେ ନାହିଁ । କେବଳ ବାବି ଆଉ ପୀରଙ୍କର ଦରମା ବଢ଼ାଇବାକୁ ସ୍ୱୀକାର କଲେ । ହେଲେ ବାକି ଆଉ ପୀର ସ୍ୱାର୍ଥପର ନ ହୋଇ ସମୂହ ସ୍ୱାର୍ଥ ଦୃଷ୍ଟିରୁ ଓଡ଼ିଶା ଥିଏଟର୍ସରୁ ବିଦାୟ ନେଲେ ।

ସେ ଦୁହେଁ ବିଦାହୋଇ ଆସିଲାବେଳେ କବିଚନ୍ଦ୍ର ଉପହାସ ଛଳରେ ତାଙ୍କୁ ଶୁଣାଇଥିଲେ—ହଉ, ହଉ ଥିଏଟର ଛାଡ଼ିଦେଇ ଯାଉଛ ଯା । ଅନ୍ୟତ୍ର ଚାକିରି କରି ଅଧିକ ରୋଜଗାର କରିପାର କିମ୍ବା ନୂଆ ଅନୁଷ୍ଠାନଟିଏ ଗଢ଼ି ରଙ୍ଗମଞ୍ଚରେ ପୁଣି ଅଭିନୟ କରିପାର, ହେଲେ କଲମ ପାଇବ ନାହିଁ । ଅର୍ଥାତ୍ କବିଚନ୍ଦ୍ରଙ୍କ ପରି ପ୍ରତିଷ୍ଠିତ ଲେଖକର ଲେଖା ପାଇବ ନାହିଁ ।

୧୯୪୦ରୁ ୧୯୪୪ ଡିସେମ୍ବର ୩୧ ତାରିଖ । ଏହି ସମୟ ମଧ୍ୟରେ ପୀରବାବୁ ନିଜର ଅଭିନୟ କଳାକୁ ଓଡ଼ିଶା ଥିଏଟର୍ସର ରଙ୍ଗମଞ୍ଚରେ ପ୍ରଦର୍ଶନ କରି ଶେଷରେ ବିଦାୟ ନେଇ ଆସିବାକୁ ବାଧ୍ୟ ହୋଇଥିଲେ ।

—ତମକୁ କଲମ ମିଳିବ ନାହିଁ । କବିଚନ୍ଦ୍ରଙ୍କର ଏଇ କଥା ଅଧିକ ପୀର, ବାବିଙ୍କ କର୍ଣ୍ଣ ଗହ୍ୱରରେ ଖାଲି ସଦାସର୍ବଦା ପ୍ରତିଧ୍ୱନିତ ହେବାକୁ ଲାଗିଲା । ସେଇ ଜିଦ୍‌ରେ ସେମାନେ ଯାଇ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍‌ର ମାଲିକ ଶ୍ରୀ ସୋମନାଥ ଦାଶଙ୍କୁ ଭେଟିଲେ । ଆଉ ଏ ଦୁଇ ଜଣଙ୍କ ସାଙ୍ଗରେ କୃଷ୍ଣଚନ୍ଦ୍ର ପାଣ୍ଡେ ମଧ୍ୟ ଯାଇଥିଲେ ।

ଗୁଣ ଚିହ୍ନେ ଗୁଣିଆ ମାତରେ ସୋମନାଥବାବୁ ଏ ତିନିଜଣଙ୍କ ଅନୁରୋଧରେ ସମ୍ମତି ପ୍ରଦାନ କଲେ । ଫଳରେ ଗଢ଼ି ଉଠିଲା ଅନ୍ନପୂର୍ଣ୍ଣା 'ବି' ଗ୍ରୁପ କଟକ ସହରରେ ।

—ଆମେ କଲମ ପାଇବୁ ନାହିଁ । ଖାଲି ଅଭିନୟ କରିପାରିବୁ । ଆଚ୍ଛା ହେଉ । ଏଇ ଜିଦରେ ସେ ଦୁହେଁ ଅଭିନୟ କରିବା ସଙ୍ଗେ ସଙ୍ଗେ ଓଡ଼ିଶାରେ ଭଲ ଭଲ ନାଟ୍ୟକାର ସୃଷ୍ଟି କରିବା ପାଇଁ ଆପ୍ରାଣ ଉଦ୍ୟମ ଚଳାଇଲେ ।

ଆଜିର ଲବ୍ଧ ପ୍ରତିଷ୍ଠିତ ନାଟ୍ୟକାର ରାମଚନ୍ଦ୍ର ମିଶ୍ର ସେତେବେଳେ ବି. ଏ. ପଢ଼ୁଥାନ୍ତି । ବାବି, ପୀରଙ୍କର ତାଙ୍କ ସାଥିରେ ଭେଟ ହେଲା । ଗୋଟାଏ ଭଲ ନାଟକ ଲେଖା ହେବ, ଏଥିପାଇଁ ଉଭୟେ ତାଙ୍କୁ ଅଧିକରୁ ଅଧିକ ଉତ୍ସାହ ଓ ପ୍ରେରଣା ଦେଇଥିଲେ । ଫଳରେ ଲେଖାହେଲା 'ମ୍ୟାନେଜର' ନାଟକ ଓ ଏହା ପରେ 'ମୁଲିଆ ।'

ରାମଚନ୍ଦ୍ର ମିଶ୍ରଙ୍କ ପରେ, ଭଞ୍ଜକିଶୋର ପଟ୍ଟନାୟକ, କମଳ ଲୋଚନ ମହାନ୍ତି, ଅଦ୍ୱୈତ ଚରଣ ମହାନ୍ତି ଓ ବିଜୟ ମିଶ୍ର ପ୍ରମୁଖ ନାଟ୍ୟକାରମାନଙ୍କର ନାଟକ ସବୁ ମଞ୍ଚସ୍ଥ ହେବାରେ ଲାଗିଲା ।

ଖାଲି ସେତିକି ନୁହେଁ, ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ରଙ୍ଗମଞ୍ଚରେ ପରିବେଷିତ ସମସ୍ତ ସାମାଜିକ ନାଟକଗୁଡ଼ିକ ଓଡ଼ିଶାର ପୁରପଲ୍ଲୀରେ ମଞ୍ଚସ୍ଥ ହୋଇ ବେଶ୍ ପ୍ରଚାର ଓ ପ୍ରସାର ଘଟିଥିଲା ।

କେବଳ କଟକ ସହରବାସୀଙ୍କୁ କାହିଁକି, ଓଡ଼ିଶାର ପୁରପଲ୍ଲୀରେ ଥିବା ଅଗଣିତ ଦର୍ଶକମାନଙ୍କୁ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ର ରଙ୍ଗମଞ୍ଚ ପାଗଳ କରି ଦେଇଥିଲା । ଏପରିକି ଦୁର୍ଗାପୂଜା ସମୟରେ ତିନି ତିନିଟା ସୋରେ କି ଭୀଷଣ ଭିଡ଼ । ସେକଥା କଳ୍ପନା କରିହେବ ନାହିଁ । ଗୁରୁଟା

ସୋ ଚାଲିବା ଯଦି ସମ୍ଭବ ହୋଇଥାନ୍ତା, ତଥାପି ମଧ୍ୟ ଦର୍ଶକମାନଙ୍କଠାରୁ ଭିଡ଼ ଲାଗିରହି ଥାନ୍ତା ।

କାହିଁ ସେଦିନର ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ର ରଙ୍ଗମଞ୍ଚ ! ଆଜି ସେଇ ରଙ୍ଗମଞ୍ଚ ମୃତବତ୍ ପଡ଼ିରହିଛି । ସଞ୍ଜ ହେଲେ କେହି ତା ଆଡ଼କୁ ଚାହୁଁ ନାହିଁ କି କୌଣସି ଅଭିନେତା ଅଭିନେତ୍ରୀଙ୍କର ଦର୍ଶନ ମଧ୍ୟ ସେଠାରେ ମିଳୁ ନାହିଁ ।

ରଙ୍ଗମଞ୍ଚର ଅବସ୍ଥା ଓଡ଼ିଶାରେ ଦିନେ ଏପରି ହେବ ବୋଲି କ'ଣ କେବେ କେହି କଳ୍ପନା କରିଥିଲି । କିଏ ଜାଣିଥିଲା ଯେ କଟକ ସହରର ସବୁ ରଙ୍ଗମଞ୍ଚରେ କାଉ ଉଡ଼ିବେ, ବାଲୁଆ ଉଡ଼ିବେ । ଆଉ ଦିବୁଦିନ ପାଇଁ ସେଇସବୁ ହଲରେ ଖାଲି ବଡ଼ ବଡ଼ ତାଲା ଝୁଲୁଥିବ !

ଆଜି ଓଡ଼ିଶାରେ ରଙ୍ଗମଞ୍ଚଗୁଡ଼ିକର ଅବସ୍ଥା ଯାହା, ସେହି ରଙ୍ଗମଞ୍ଚରେ ଅଭିନୟ କରୁଥିବା ସେଦିନର ଅଭିନେତା ଓ ଅଭିନେତ୍ରୀ ମାନଙ୍କର ମଧ୍ୟ ସେହିପରି ଦୟନୀୟ ଅବସ୍ଥା, ଯାହାକି ନ କହିଲେ ଭଲ ।

ଧୀରବାବୁ ଏକ ଦୀର୍ଘଶ୍ୱାସ ମାରି ସେଦିନ କହିଥିଲେ—୧୯୪୫ ମସିହା । କେତେ ସ୍ମୃତି ଆଉ କେତେ ବିସ୍ମୃତିର ଅନୁଭୂତି । ପ୍ରୋପ୍ରାଇଟର ସୋମନାଥ ଦାଶଙ୍କ ପରେ, ଲିଙ୍ଗରାଜ ନନ୍ଦଙ୍କ ଉପରେ ରଙ୍ଗମଞ୍ଚର ସକଳ ଦାୟିତ୍ୱ ନ୍ୟସ୍ତ ହେଲା । ହେଲେ କ'ଣ ହେବ କ୍ରମେ କ୍ରମେ ପରିଚାଳନା-ଗତ ବହୁ ଦୋଷ ତ୍ରୁଟି ଦେଖାଦେଲା । ଫଳରେ ଅନୁଷ୍ଠାନରେ ଆର୍ଥିକ ଦୁର୍ଗତି ଘଟିଲା । ଅଭିନେତା ଅଭିନେତ୍ରୀମାନେ ସେମାନଙ୍କର ନ୍ୟାଯ୍ୟ ପାଉଣାତକ ଯଥା ସମୟରେ ନପାଇ ବହୁ ଅଭାବ ଅନଟନରେ ପଡ଼ି ଛଟପଟ ହେବାକୁ ଲାଗିଲେ । ଭୋକ ଉପାସରେ ଆଉ କେତେଦିନ ଅବା ଅଭିନୟ ଚାଲନ୍ତା ।

ଗଛରୁ ଫଳ ଶେଷ ହୋଇ ଗଲେ ଯେପରି ନାନା ଜାତିର ପକ୍ଷୀ ଉଡ଼ି ପଳାନ୍ତି, ଠିକ୍ ସେହିପରି ଥିଏଟରେ ଅଭାବ ଦେଖି ଅଭିନେତା ଅଭିନେତ୍ରୀମାନେ ଅନ୍ନପୂର୍ଣ୍ଣା 'ବି' ରଙ୍ଗମଞ୍ଚରୁ ବିଦାୟ ନେବାକୁ ଅଗତ୍ୟା ବାଧ୍ୟ ହୋଇଥିଲେ ।

୧୯୫୪ ମସିହା । ପୀରବାବୁଙ୍କ କଳାପ୍ରିୟ ଜୀବନର ଗତିପଥ ପୁନଶ୍ଚ ଏକ ନୂତନ ମୋଡ଼ ନେଲା । ସେହିବର୍ଷ ସେ ଚଳଚ୍ଚିତ୍ର ଜଗତରେ ପଦାର୍ପଣ କରି 'ଭାଇଭାଇ' ଛବିରେ ପାର୍ଶ୍ୱନାୟକ ଭୂମିକାରେ ଅଭିନୟ କରିବାର ସୁଯୋଗ ଲାଭ କରିଥିଲେ ।

ଏହାପରେ ଓଡ଼ିଆ ଚଳଚ୍ଚିତ୍ର ଜଗତରେ ତାଙ୍କର ସୁନାମ ବଢ଼ି ଚାଲିଲା ଏବଂ ସେ ଅଦ୍ୟାବଧି ସର୍ବମୋଟ ପ୍ରାୟ ୪୦ଟି ସିନେମାରେ ଅଭିନୟ କରି ଆସିଛନ୍ତି ।

ତାଙ୍କର ଅସାଧାରଣ କଳା ପ୍ରତିଭା ତାଙ୍କୁ ବହୁ ସମ୍ମାନର ଅଧିକାରୀ କରିପାରିଛି । ବହୁ ଅନୁଷ୍ଠାନ ତରଫରୁ ତାଙ୍କୁ ଅନେକ ମାନପତ୍ର ମିଳିଛି । କେତେ ସମ୍ବର୍ଦ୍ଧନା ସେ ଲାଭ କରିଛନ୍ତି ।

ହେଲେ ତାଙ୍କୁ ଯେତେବେଳେ ମୁଁ ପ୍ରଶ୍ନ କଲି—

—ଆଚ୍ଛା ସତକହିଲେ ପୀରବାବୁ, ଏଇ ଅଭିନୟ କଳାକୁ ଆଶ୍ରୟ କରି ଆପଣ କ'ଣ ବଞ୍ଚିପାରିଥାନ୍ତେ ?

ମୋ ପ୍ରଶ୍ନ ଶୁଣିବା ମାତ୍ରେ ସେ ଠୋ, ଠୋ ହୋଇ ହସି ଉଠିଥିଲେ । ତାଙ୍କ ମୁହଁରେ ଯେତିକ ଆନନ୍ଦ, ସେତିକ ବିସ୍ମୟର ଝଡ଼ ଉଠୁଥିବାର ମୁଁ ଅନୁଭବ କରୁଥିଲି ।

ତାପରେ ସେ ମୋତେ ଶୁଣାଇଲେ, ଆପଣ ପରା କହୁଥିଲେ କଳାକାର ଚିର ଅମର ବୋଲି । ତେବେ ସେଠି ପୁଣି ବଞ୍ଚି ପାରିବାର ପ୍ରଶ୍ନ କାହିଁକି ?

ବୁଝିଲେ ଆଜ୍ଞା, ଓଡ଼ିଶାରେ କେବଳ କଳାକୁ ଆଶ୍ରୟକରି ତେଲ ଲୁଣ ସଂସାରରେ ବଞ୍ଚିବା ଖାଲି ପାଗଳାମି ବ୍ୟତୀତ ଆଉ କିଛି ନୁହେଁ । ଆଉ କାହାଁ ଯଦିବା କେହି ଏଇ କଳାକୁ ଜୀବନର ଏକମାତ୍ର ପେଶା ଜ୍ଞାନକରି ବଞ୍ଚିପାରିଛି, ତାହା ମୋ ମତରେ କାଠକୁ ପୋକ କାଟୁ କାଟୁ 'ଠ' ଲେଖା ହେଲା ବୋଲି ବୁଝିବାକୁ ହେବ ।

—ମୁଁ ଯଦି ମୋର ଅଭିନୟକୁ ଜୀବନର ଏକମାତ୍ର ପେଶା ବୋଲି ଧରିନେଇଥାନ୍ତି, ତେବେ ଆଜି ମୋତେ କେଉଁଠି ଏକ ଝୁମ୍ପୁଡ଼ି ଘରର ତୋଳେ ପିଇ ଦରିଦ୍ର ଜୀଇ ମାଡରେ ପଡ଼ିରହି ଛଟପଟ ହେବାକୁ ପଡ଼ିଥାନ୍ତା ।

ଆଜି  କଟକ ସହରର କାଫ୍‌ଲା ଛକର ମହାନ୍ତି ପଡ଼ାରେ ଅଧୁନାତନ ରୁଚି ସମ୍ପନ୍ନ ଏଇ ଯେଉଁ କୋଠା ଖଣ୍ଡିକ ଆପଣ ଦେଖୁଛନ୍ତି, ତାହା ଗଢ଼ି ଉଠିଛି ଆମ ଜମିଦାରୀର କ୍ଷତିପୂରଣ ଟଙ୍କାରେ । ତା ନ ହୋଇ ଥିଲେ ମୁଁ କିଏ ଆଉ ଏତେବଡ଼ ଘର କିଏ ।

ତାଙ୍କର ସ୍ତ୍ରୀ ଶ୍ରୀମତୀ ନିର୍ମଳା ଦେବୀ ମଧ୍ୟ କଟକ ଆକାଶବାଣୀର ନାଟ୍ୟମଣ୍ଡଳରେ ଅଂଶଗ୍ରହଣ କରି ଆସୁଛନ୍ତି । ଖାଲି ସେତିକି ନୁହେଁ ସେ ମଧ୍ୟ ସାମୟିକ କବିତା ଲେଖା ଲେଖି କରନ୍ତି ବୋଲି ଜାଣିବାକୁ ପାଇଲି । ତାଙ୍କର ଏକମାତ୍ର କନ୍ୟା ଶ୍ରୀମତୀ ଗୀତା ମିଶ୍ର ଓରଫ୍ ଗୀତା ବିଶାଲ ଓଡ଼ିଆରେ ଏମ୍. ଏ. ପାଶକରି ଅଧୁନା କଟକ ଆକାଶବାଣୀ 'ଏ' କେନ୍ଦ୍ରରେ, ଆନାଉନ୍‌ସର ଭାବେ କାର୍ଯ୍ୟ କରୁଛନ୍ତି । ସେ ମଧ୍ୟ କଟକ ଟେଲିଭିଜନ୍ କେନ୍ଦ୍ରର ଜୁଆର କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରି ଆସୁଛନ୍ତି ।

ସବୁଠାରୁ ମଜାର କଥା ହେଲା, ରାମଚନ୍ଦ୍ର ୧୪ ବର୍ଷ ବନବାସ ପରେ ଘରକୁ ଫେରିଥିଲବେଳେ, ପୀରବାବୁ ଘର ଛାଡ଼ିବାର ୧୨ ବର୍ଷ ପରେ ପୁଣି ଘରକୁ ଫେରି ଯିବାର ସୁଯୋଗ ଲାଭ କରିଥିଲେ ।

ଆଜି ପରିଣତ ବୟସରେ ମଧ୍ୟ ନିଜର ସାଧନା ତାଙ୍କର ଅବ୍ୟାହତ ରହିଛି । ଅଭିନୟ କଳାରେ ତାଙ୍କର ଏକାନ୍ତ ନିଷ୍ଠା, ଅସାଧାରଣ ପ୍ରତିଭା ଆଜି ତାଙ୍କୁ ଜଣେ କୁଶଳୀ ଅଭିନେତା, ସଫଳ ନିର୍ଦ୍ଦେଶକ ଏବଂ ଚଳଚ୍ଚିତ୍ର ଜଗତରେ ମଧ୍ୟ ଜଣେ ସଫଳ ଅଭିନେତାର ପରିଚୟ ପ୍ରଦାନ କରିପାରିଛି ।

ବର୍ତ୍ତମାନ ସେ କେନ୍ଦ୍ର ସରକାରଙ୍କଠାରୁ ମାସକୁ ୩୭୫ ଟଙ୍କା କଳାକାର ପେନସନ ପାଉଛନ୍ତି । ତାଙ୍କ କଳାକାର ଜୀବନ ଆଜୀବନ ଅସରନ୍ତି ସୁଖ ଶାନ୍ତି ଲଭିକରୁ । ତାଙ୍କର ଯାତ୍ରା ପଥ ପୁଷ୍ପିତ ହେଉ । ପ୍ରବୃଦ୍ଧ ହୁଅନ୍ତୁ ସେଇଶ୍ୱରଙ୍କ ନିକଟରେ ଏତିକି ହିଁ କାମନା ।

